ସଂପାଦନା :

ଶ୍ରୀ ସୀତାକାନ୍ତ ମହାନ୍ତି (ମୁଖ୍ୟ-ସଂପାଦକ)
ଶ୍ରୀ ଧ୍ରୁବଜ୍ୟୋତି ଚାଟାର୍ଜି
ଶ୍ରୀମତୀ ରେଣୁକଣା ବେରା
ଶ୍ରୀ ଗୋପୀନାଥ ମହାପାତ୍ର
ଶ୍ରୀ ପ୍ରହ୍ଲାଦ ପ୍ରଧାନ (ଛାତ୍ର-ପ୍ରତିନିଧି)

**Editors :**

Sri Sitakanta Mohanty
[ Editor-in-Chief ]
Sri Dhrubajyoti Chatterjee
Mrs. Renukana Bera
Sri Gopinath Mahapatra
Sri Prahallad Pradhan
[ Student-Representative ]

# ସଂପାଦକୀୟ

## ଲକ୍ଷ୍ୟ ଓ ପନ୍ଥା

ଚଳିତ ଶତାବ୍ଦୀର ଜଣେ ବିଶିଷ୍ଟ ଦାର୍ଶନିକ କହନ୍ତି — 'ମଣିଷ ବିଜ୍ଞାନ ବଳରେ ଆକାଶରେ ପକ୍ଷୀପରି ଉଡ଼ିପାରିଛି, ଜଳରେ ମାଛ ଭଳି ସନ୍ତରଣ କରି ଜାଣିଛି, ଅଥଚ ମାଟି ଉପରେ ମଣିଷ ପରି ଚଳି ଶିଖିପାରିନାହିଁ" — ଏହି ମନ୍ତବ୍ୟଟି ଅତି ବାସ୍ତବ ଓ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଆଜିର ସମସ୍ତ ଆବିଷ୍କ୍ରିୟା ଓ ବୈଜ୍ଞାନିକ କୌଶଳ ଯେ ମଣିଷ ଜୀବନର ବାସ୍ତବ ଲକ୍ଷ୍ୟ ସାଧନ ଦିଗରେ ବିଫଳ ହୋଇଛି, ଏକଥା ବିଶ୍ୱର ବିଶିଷ୍ଟ ଚିନ୍ତା-ନାୟକମାନଙ୍କ ଠାରୁ ଆରମ୍ଭ କରି ସାଧାରଣ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତେ ଊଣା ଅଧିକେ ଅନୁଭବ କଲେଣି ।

ଅତି ସଂକ୍ଷିପ୍ତ ଭାବରେ କହିଲେ, ମଣିଷ ଜୀବନର ଲକ୍ଷ୍ୟ ହେଉଛି 'ଶାନ୍ତି' ଶାନ୍ତିର ଅର୍ଥ ମାନସିକ - ସମତା ରକ୍ଷା (A balanced state of mind) । ଏହି ମାନସିକ - ସାମ୍ୟ ନଷ୍ଟ ହୁଏ ବହୁ ସମସ୍ୟାର ଉଦ୍ଭବ ଯୋଗୁଁ ଏବଂ ସମସ୍ୟା ଗୁଡ଼ିକର ସୃଷ୍ଟି ହୁଏ ବ୍ୟକ୍ତି ସହିତ ତା' ପରିପାର୍ଶ୍ୱର ସଂହତି-ହୀନତା ଫଳରେ ।

ବସ୍ତୁତଃ ଜୀବନର ସ୍ତରଭେଦହିଁ ହେଉଛି ମଣିଷର ପରିପାର୍ଶ୍ୱ । ମଣିଷ ତା' ଜୀବନ ମାର୍ଗରେ ବ୍ୟକ୍ତି, ଦମ୍ପତି, ପରିବାର, ସମାଜ ଓ ରାଷ୍ଟ୍ର— ଏହି ପାଞ୍ଚଟି ସ୍ତର ଦେଇ ଗତି କରୁଛି । ଏଣୁ ବ୍ୟକ୍ତି ପକ୍ଷରେ ତା'ର ଦାମ୍ପତ୍ୟ, ପାରିବାରିକ, ସାମାଜିକ ଓ ରାଷ୍ଟ୍ରୀୟ ସ୍ତର ଗୁଡ଼ିକ ସହିତ ଏକ ଶୁଭ ସଂହତି ରକ୍ଷାକରି ଚଳିବା ସର୍ବଦୌ ବାଞ୍ଛନୀୟ । ଏହି ସଂହତିର ଅଭାବ ଘଟିଲେ ବହୁ ଉତ୍କଟ ସମସ୍ୟାର ସଂକ୍ରମଣ ହୁଏ ଏବଂ ତଜ୍ଜନିତ ପୀଡ଼ାରୁ ମଧ୍ୟ ରକ୍ଷାପାଇବା ତା ପକ୍ଷରେ ଆଦୌ ସମ୍ଭବ ହୁଏନାହିଁ । ଫଳରେ, ତା'ର ସେହି ଚିର ଇପ୍‌ସିତ ଶାନ୍ତିଲାଭ କେବଳ ଦିବାସ୍ୱପ୍ନରେ ହିଁ ପର୍ଯ୍ୟବସିତ ହୁଏ ।

କିନ୍ତୁ ଯେତେ ସହଜ ମନେହେଉଛି, ଜୀବନ କ୍ଷେତ୍ରରେ ତା'ର ବାସ୍ତବ-ରୂପାୟନ ସେତେ ସହଜ ନୁହେଁ । ଏଣୁ ହୁଏତ ପ୍ରଶ୍ନ ଉଠିପାରେ ଯେ, ଦାମ୍ପତ୍ୟ, ପାରିବାରିକ, ସାମାଜିକ ଓ ରାଷ୍ଟ୍ରୀୟ ଜୀବନରୁ ଦୂରେଇଯାଇ ଅର୍ଥାତ୍ ଆତ୍ମକୃତ ଏକ ନିଃସଙ୍ଗ ଓ ନିର୍ଜନ-ବାସ ଗ୍ରହଣ କରି ବ୍ୟକ୍ତି ନିଜକୁ ହୁଏତ ସମସ୍ୟା-ମୁକ୍ତ କରିପାରେ ଓ ଚିର-ପୋଷିତ ଶାନ୍ତି ଲାଭ କରିପାରେ । କିନ୍ତୁ ଦେଖାଯାଇଛି, ସେଠାରେ ମଧ୍ୟ ଶାନ୍ତି ମିଳିପାରିନି । କବିଙ୍କ କଂଠରେ ଫୁଟିଉଠିଥିବା ନିଃସଙ୍ଗ-ମାନବ-ହୃଦୟର ଅଶାନ୍ତ ଆର୍ତ୍ତବିଳାପ ଏବେବି ତା'ର ଉତ୍ତର ଦେଉଛି ।

“ବରଂ ନିବାସ ଭଲ ରଣକ୍ଷେତ୍ରରେ
ଭୟରେ ସଦା ଯହିଁ ହୃଦୟ ଥରେ ।”

ମଣିଷ ଜୀବନରେ ଏହିପରି ଆତ୍ମ ନିର୍ବାସନ ଓ ଏକାନ୍ତ-ବାସର ଦୃଷ୍ଟାନ୍ତ ସଂଖ୍ୟା-ଲଘୁ ହେଲେହେଁ ମାନବ ସମାଜର ଅନୁଭୂତି ଭିତରକୁ ଯେ ନ ଆସିଛି ଏପରି ନୁହେଁ, ବରଂ ଏହି ଅନୁଭୂତି ଚିର ଅଶାନ୍ତ ମନର ବାର୍ତ୍ତା ବହନ କରିଛି ।

ଏହାର କାରଣ ହେଉଛି, ମଣିଷ ଭିତରେ ରହିଥିବା ସୁରତି ଧାରା; ଇଂରାଜୀରେ ଏହାର ମନୋବୈଜ୍ଞାନିକ ପରିଭାଷା ହେଉଛି 'ଲିବିଡ୍ରୋ' (Libido) । ଏହି ସୁରତି ଧାରାର ଭାବ — ପ୍ରକ୍ରିୟା ହେଉଛି ଯୋଗାବେଗ — ଅନ୍ୟ ସହିତ ଯୁକ୍ତ ବା ମିଳିତ ହେବାର ଆକାଂକ୍ଷା— ଏକାକୀ ସେ ରହିପାରିବନି ଏବଂ ମଣିଷର ଏହି ସହଜାତ ଲିପ୍ସା ଅବଦମିତ । ଏହି କାରଣରୁ ମଣିଷ ସାମାଜିକ ଏବଂ ସଂସାର-ଛଡ଼ା ହେବାକୁ ପସନ୍ଦ କରେନା । ବ୍ୟକ୍ତିର ଯାହାପ୍ରତି ସର୍ବୋଚ୍ଚ ସହଜ ଆକର୍ଷଣ ରହେ ସେ ହିଁ ତା'ର ଯୋଗାବେଗର ଆଧାର—ଅର୍ଥାତ୍ ସହଜ ଭାବେ ମଣିଷ ଜୀବନରେ ଯାହାକୁ ସବୁଠାରୁ ଅଧିକ ଭଲପାଏ ସେ ହିଁ ତା' ଜୀବନର ସର୍ବୋତ୍ତମ ପ୍ରେରଣାଦାୟକ ବ୍ୟକ୍ତି । ଏଣୁ ଏହି ଆଧାର ବା ଜୀବନ କେନ୍ଦ୍ରର ଗୁଣସ୍ୱରୂପ ଅନୁଯାୟୀ ବ୍ୟକ୍ତିର ଚରିତ୍ର ଗଠିତ ହୁଏ । ଏ ପ୍ରସଙ୍ଗରେ ଇଂରାଜୀରେ ଗୋଟିଏ କଥା ଅଛି — “Man is fashioned according to the object he loves.” ଅର୍ଥାତ୍ ମଣିଷ ଯାହାକୁ ସବୁଠୁ ବେଶୀ ଭଲପାଏ, ତା'ର ପରି ନିଜକୁ ଗଢି ତୋଳିବାକୁ ଚାହେଁ ।

ଉପର୍ଯ୍ୟୁକ୍ତ କାରଣରୁ ଜୀବନର ପଞ୍ଚ-ସ୍ତର ଭିତର ଦେଇ ବଞ୍ଚୁଥିବା ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କର ସର୍ବପ୍ରଥମ ଆବଶ୍ୟକତା ନିଜ ଜୀବନର ପ୍ରାଣ-କେନ୍ଦ୍ର ଏହି ମଣିଷଟିକୁ ବାଛିନେବା ଯାହାଙ୍କୁ ଅନୁସରଣ କରି ସେ ତା'ର ବିଚ୍ଛିନ୍ନ ଜୀବନର ସମସ୍ତ ସମସ୍ୟାର ସମାଧାନ ପଥ ପାଇପାରିବ । ବ୍ୟକ୍ତି, ଦମ୍ପତି, ପରିବାର, ସମାଜ, ରାଷ୍ଟ୍ର ଆଦି ପ୍ରତି ସ୍ତରରେ ସୃଷ୍ଟି ହୋଇଥିବା ସମସ୍ୟା ଗୁଡ଼ିକୁ ଯେ ନିଜର ଚରିତ୍ର ଓ ଅଭି-ଜ୍ଞତା ଦେଇ ସମାଧାନ କରି ଏକ ଶାନ୍ତି-ସମାହିତ ଜୀବନଯାପନ କରିବାର ବିଜ୍ଞାନ ଓ

କୌଶଳ ଜାଣିଛନ୍ତି କେବଳ ସେହି ବ୍ୟକ୍ତି ହିଁ ମଣିଷର ଆଶ୍ରୟ । କାରଣ ଆଚରଣ-ହୀନ କେବଳ ଶୁଷ୍କ ଉପଦେଶ ସାଧାରଣ ଜନ-ଚେତନାକୁ ପ୍ରଭାବିତ କରିପାରେନା— ଲବଣୀ-ହୀନ-ଦୁଗ୍ଧ ପରି ଏହା ଅସାର । ଏ ପ୍ରସଙ୍ଗରେ ଶ୍ରୀମଦ୍‌ଭଗବଦ୍‌-ଗୀତାରେ କୁହାଯାଇଛି —

"ଯଦ୍ ଯଦା ଚରତି ଶ୍ରେଷ୍ଠ ସ୍ତତ୍ର ଦେବତରୋ ଜନଃ
ସ ଯତ୍ ପ୍ରମାଣ କୁରୁତେ ଲୋକସ୍ତଦନୁବର୍ତ୍ତତେ ।

(୩ । ୨୧)

ଏଣୁ ଏହି ମହାନ୍ ବ୍ୟକ୍ତିହିଁ ବିଶ୍ୱର ପୁରୁଷୋତ୍ତମ । 'ପୁର୍' ଧାତୁର ଅର୍ଥ ପୂରଣ କରିବା । ଯୁଗ ଭିତ୍ତିରେ ମଣିଷ ସମାଜର ବିବର୍ତ୍ତିତ ଧାରା ପ୍ରତି ଲକ୍ଷ୍ୟ ରଖି ସେ ବୈଶିଷ୍ଟ୍ୟାନୁପାତିକ ପ୍ରତିଟି ମଣିଷକୁ ଉତ୍ତମ ଭାବରେ ପୂରଣ କରନ୍ତି । ସାମଗ୍ରୀକ ଭାବେ ମଣିଷର ସତ୍ତା ସମ୍ବର୍ଦ୍ଧନା ଯେତେବେଳେ ବିପର୍ଯ୍ୟସ୍ତ ହୋଇପଡ଼େ, ସମୟ କ୍ରମେ ବିଶ୍ୱରେ ଏହିଭଳି ଯୁଗସମସ୍ୟା ସମାଧାନକାରୀ ବ୍ୟକ୍ତିତ୍ୱ ଜନ୍ମ ନିଏ । ମଣିଷର ଅଜ୍ଞା-ନତା ପ୍ରସୂତ ଅପୂର୍ଣ୍ଣ ଜୀବନ ଏହି ଯୁଗ-ପୁରୁଷୋତ୍ତମଙ୍କର ସ୍ପର୍ଶରେ ପୂର୍ଣ୍ଣତା ଲାଭକରେ । ନୋବେଲ୍ ପୁରସ୍କାରପ୍ରାପ୍ତ ପାଶ୍ଚାତ୍ୟ ଦାର୍ଶନିକ ଆଲେକ୍‌ସିସ୍ କାରେଲ୍‌ଙ୍କ ମତକୁ ଉଦ୍ଧାର କରି କୁହାଯାଇପାରେ —

"Midst of all our ignorance and halfness there comes a full-man."

ଏଣୁ ଏହି ପୁରୁଷୋତ୍ତମ ଆଚାର୍ଯ୍ୟ ବା ସଦ୍‌ଗୁରୁଙ୍କୁ ବାଦ୍ ଦେଇ ନିଜର ପ୍ରବୃତ୍ତି ଆଚ୍ଛନ୍ନ ବୁଦ୍ଧି ଖଟାଇ ସାଧାରଣ ମଣିଷ ନିଜେ ତା'ର ସମାଧାନର ପଥ ଖୋଜି ପାଇବା ଅସମ୍ଭବ । ଅନ୍ୟ ପକ୍ଷରେ ଅଦୃଷ୍ଟ ନିରାକାର ଭଗବାନଙ୍କ ଉପରେ ମଙ୍ଗ ଛାଡ଼ିଦେଇ ବସିବାରେ ଯେଉଁ କେତେକ ବିଶ୍ୱାସୀ ସେମାନେ ବାସ୍ତବତା ଠାରୁ ବହୁ ଦୂରରେ । ସେମାନଙ୍କ ପ୍ରତି ସତର୍କ ରହିବାକୁ ଡର୍ମାନ ନିର୍ଦ୍ଦେଶ କରି ଜର୍ଜ ବର୍ଣ୍ଣାଡଶଃ କହିଛନ୍ତି—

"Be aware of those who believe in God of the sky."

ବୈଷ୍ଣବ ଶାସ୍ତ୍ର ମଧ୍ୟ ଠିକ୍ ଏହି କଥା କୁହେ —

"ଗୁରୁ ଛେଡ଼େ ଗୋବିନ୍ଦ (ଈଶ୍ୱର) ଭଜେ
ସେହି ପାପୀ ନରକେ ମଜେ ।"

ଏଣୁ ବାସ୍ତବ ଓ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାରକଲେ ଦେଖାଯାଏ, ଯୁଗ-ସମସ୍ୟା-ସମାଧାନକାରୀ ଏହି ଶ୍ରେଷ୍ଠ ମଣିଷଟି ସହିତ ଯୁକ୍ତ ହୋଇ ତାଙ୍କୁ ଭଲପାଇ ଓ ଅନୁସରଣ କରି ଚାଲିଲେହିଁ ବ୍ୟକ୍ତି ତା' ଜୀବନର ଆକାଂକ୍ଷିତ ଶାନ୍ତି ଲାଭ କରିପାରିବ । ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ —

"Carrying out the commands of Guru with least hesitation and shadow of doubt is the only path for success in life, there is no other path."

ଯୁଗେ ଯୁଗେ ଦେଖାଯାଇଛି, ଏହି ଅତିମାନବ ସତ୍ତା ପ୍ରେମ-ଘନ-ବିଗ୍ରହ ରୂପେ ବିଶ୍ୱରେ ଅବତୀର୍ଣ୍ଣ ହୋଇ ନିଜର ପ୍ରୀତି-ରଜ୍ଜୁରେ ସୃଷ୍ଟିର ଜଡ଼ ଚେତନ ସଭିଙ୍କୁ ଆକର୍ଷଣ କରିଆସିଛି । ନିଜ ସମ୍ବିତ ଯୁକ୍ତ ହେବା ଲାଗି ଏହି ତାପ-ଯାତନା-କ୍ଳିଷ୍ଟ ମାନବ ଜାତି ପ୍ରତି ସେହି ଚିର-ଦରଦୀ ପରମ-ପ୍ରେମମୟ ଯୁଗ ପୁରୁଷୋତ୍ତମ ମାନଙ୍କର ମର୍ମଭେଦୀ ଆକୁଳ ଆହ୍ୱାନ ଏବେ ବି ଶୁଭି ଶୁଭି ଯାଉଛି । ※

ଯା' ଛଡ଼ା ଉପାୟ ନାହିଁ— ନାନ୍ୟ ପନ୍ଥାଃ ବିଦ୍ୟତେ—

"ବନ୍ଦେ ପୁରୁଷୋତ୍ତମମ୍"

---

※ ମନ୍ମନା ଭବ ମଦ୍ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ
ମାମେ ବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ ପରାୟଣଃ ।
(ଗୀତା, ୯।୩୪)

★ ★

"ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି । (ବୌଦ୍ଧଗାନ)

★ ★

"I am the way, the truth. None can go to father, but by me." ( Jesus Christ )

★ ★

"ହେ ସଂସ୍କାରକ ! ଦଣ୍ଡାୟମାନ ହୁଅ, ସତର୍କ କରିଦିଅ ଏବଂ ସ୍ୱୀୟ ପ୍ରଭୁଙ୍କର ମହତ୍ତ୍ୱ ଘୋଷଣା କର ।" (କୋର୍-ଆନ୍-ସରିଫ୍ ସୁରାମୋଦ ସେସ୍‌ରୋ)

★ ★

"କିଏ କେଉଁଠି ଅଛ—ହିନ୍ଦୁ, ମୁସଲମାନ, ଜୈନ, ଖ୍ରୀଷ୍ଟାନ୍, ବ୍ରାହ୍ମଣ, ବୈଷ୍ଣବ, ଚଣ୍ଡାଳ ଥରେ ପରମାତ୍ମାଙ୍କ ଭାବରେ ଭାବିତ ହୁଅ, ମୁଁ ତୁମର ସମସ୍ତ ଜ୍ୱାଳା ଯନ୍ତ୍ରଣା ମୋର ହାତରେ ପୋଛି ଦେବି ।" (ପୁଣ୍ୟପୋଥି) ତ୍ରୟୋଦଶ ଦିବସ ।

— ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ର —

# ସାନ୍ଧ୍ୟ କଲେଜ ସାଂସ୍କୃତିକ ସଂସଦ
# ବାର୍ଷିକ ବିବରଣୀ

ଉତ୍କଳ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ୧୯୬୨ ମସିହା ଅଗଷ୍ଟ ୨୮ ତାରିଖ ଠାରୁ ପ୍ରତିଷ୍ଠିତ ହୋଇ ଏହି ସାନ୍ଧ୍ୟ ମହାବିଦ୍ୟାଳୟ ତାର ଗତିପଥରେ ଆଗେଇ ଚାଲିଛି । ଏହି କଲେଜର ସ୍ଥାନ ସଂଖ୍ୟା ୧୦୦୮ । ବର୍ତ୍ତମାନ ସୁଦ୍ଧା ପ୍ରାୟ ଏକସହସ୍ର ଛାତ୍ର କୃତିତ୍ୱର ସହିତ ସ୍ନାତକ ହୋଇପାରିଛନ୍ତି ।

ଏହି ମହାବିଦ୍ୟାଳୟର ସାଂସ୍କୃତିକ ସଂସଦ ଏହାର ପ୍ରତିଷ୍ଠା ଦିବସ ଠାରୁ ଛାତ୍ର-ମାନଙ୍କର ସାଂସ୍କୃତିକ ଲାଗି ବିଭିନ୍ନ ଉତ୍ସବ ଓ ଆଲୋଚନାଚକ୍ରର ଅନୁଷ୍ଠାନ କରି ଆସୁଛନ୍ତି । ଚଳିତବର୍ଷ ମଧ୍ୟ ଏ ଦିଗରେ ଯଥେଷ୍ଟ ଉତ୍ସାହ-ପ୍ରଦ କାର୍ଯ୍ୟକ୍ରମ ଗ୍ରହଣ କରା-ଯାଇଅଛି ।

ଗତ ୨୮-୮-୭୦ ତାରିଖ ଦିନ ଏହି କଲେଜର ନବମ ବାର୍ଷିକ ପ୍ରତିଷ୍ଠା ଦିବସ ଅଧ୍ୟକ୍ଷ ଶ୍ରୀ ଶିବକୁମାର ପଣ୍ଡାଙ୍କ ସଭାପତିତ୍ୱରେ ପାଳନ କରାଯାଇଥିଲା ଓ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ବଂଶୀଧର ସାମନ୍ତରାୟ ଏହି ଉତ୍ସବରେ ଯୋଗଦାନ କରି ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ଜାତିସଂଘର ରୌପ୍ୟ-ଜୁବୁଲି ଉତ୍ସବ ଗତ ୨୪ । ୧୦ । ୭୦ ତାରିଖରେ ପାଳିତ ହୋଇଥିଲା । ଏହି ସଭାରେ କଲେଜର ଉପାଧ୍ୟକ୍ଷ ଶ୍ରୀ କ୍ଷିତୀଶଚନ୍ଦ୍ର ଦେବ ପୌରହିତ୍ୟ କରିଥିଲେ । ଏତଦ୍‌ବ୍ୟତୀତ ସର୍ବଶ୍ରୀ ଅଚ୍ୟୁତାନନ୍ଦ ମିଶ୍ର, ଭାନୁଶଙ୍କର ମିଶ୍ର, ମୁରଲୀଧର ପଟ୍ଟନାୟକ ଓ ଭାଗବତ ମିଶ୍ର ପ୍ରମୁଖ ଅଧ୍ୟାପକଗଣ ଜାତିସଂଘର ଉଦ୍ଦେଶ୍ୟ ଓ ତାତ୍ପର୍ଯ୍ୟ ବୁଝାଇଥିଲେ ।

ଗତ ପୂଜା ଅବକାଶରେ କମନ୍-ରୁମ୍ ସଂପାଦକ ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକଙ୍କ ନେତୃତ୍ୱରେ ଗୋଟିଏ ଛାତ୍ରଦଳ କଲିକତା, ପାଟନା, ଆଗ୍ରା, ବନାରସ, ଲକ୍ଷ୍ନୌ, କାନପୁର ଓ ଦିଲ୍ଲୀ ପ୍ରଭୃତି ଐତିହାସିକ ସ୍ଥାନମାନ ପରିଦର୍ଶନ କରିଥିଲେ ।

ଶେଷବର୍ଷ ଛାତ୍ର ସ୍ୱର୍ଗତଃ ଜନାର୍ଦ୍ଦନ ଆଚାର୍ଯ୍ୟଙ୍କର ଆକସ୍ମିକ ମୃତ୍ୟୁରେ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରି ଏକ ଶୋକସଭା ଗତ ୧୨ । ୧୧ । ୭୦ ତାରିଖ ଦିନ କଲେଜ ହଲ୍‌ରେ ଅନୁଷ୍ଠିତ ହୋଇଥିଲା ।

ଚଳିତ ବର୍ଷ ଠାରୁ ସାଧାରଣ ଜ୍ଞାନ ବିଷୟରେ ଏକ ପ୍ରତିଯୋଗୀତା କରି ପ୍ରତି-ଯୋଗୀମାନଙ୍କୁ ତିନୋଟି ପୁରସ୍କାର ପ୍ରଦାନ କରିବାକୁ ସାଂସ୍କୃତିକ ସଂସଦର କାର୍ଯ୍ୟକାରୀ କମିଟିରେ ଏକ ପ୍ରସ୍ତାବ ଗୃହୀତ ହୋଇଛି ।

ଆସନ୍ତା ଶିକ୍ଷା ବର୍ଷ ଠାରୁ କଲେଜରେ ଗୋଟିଏ ପାଠ୍ୟପୁସ୍ତକ ଗ୍ରନ୍ଥାଗାର ପ୍ରତିଷ୍ଠା କରିବା, ଏହି କଲେଜରେ ବୈଷୟିକ ଶ୍ରେଣୀମାନ ଖୋଲିବା ଓ ଆଇନ୍ ପାଠ୍ୟ-କ୍ରମ ପ୍ରବର୍ତ୍ତନ କରିବା ଲାଗି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଓ ଶିକ୍ଷାମନ୍ତ୍ରୀଙ୍କୁ ଅନୁରୋଧ କରାଯାଇଛି ।

ଆଗାମୀ ଶିକ୍ଷା ବର୍ଷ ଠାରୁ ବିଭିନ୍ନ ବିଷୟରେ ଅନର୍ସ ପାଠ୍ୟକ୍ରମ ଚାଲୁ କରିବା ନିମନ୍ତେ ମଧ୍ୟ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ଠାରୁ ନିର୍ଭର ପ୍ରତିଶ୍ରୁତି ମିଳିଅଛି ।

ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ହେଉଥିବା ବକ୍ତୃତା ପ୍ରତିଯୋଗୀତାରେ ସାନ୍ଧ୍ୟ କଲେଜର ଦୁଇଜଣ ଛାତ୍ରଙ୍କୁ ଗ୍ରହଣ କରାଯିବା ନିମନ୍ତେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରାଯାଇଛି ।

ନିକଟ ଅତୀତରେ ଏହି କଲେଜରେ 'ଓଡ଼ିଆ ସାହିତ୍ୟ ସଂସଦ' ଉଦ୍‌ଘାଟିତ ହୋଇଯାଇଛି । ଏହି ଉଦ୍‌ଘାଟନ ଉତ୍ସବରେ ଉପାଧ୍ୟକ୍ଷ ଶ୍ରୀ କ୍ଷିତୀଶଚନ୍ଦ୍ର ଦେବ ପୌରହିତ୍ୟ କରିଥିଲେ । ମୁଖ୍ୟ ଅତିଥି ଭାବେ ଯୋଗଦେଇ ଖୋର୍ଦ୍ଧା ପ୍ରାଣନାଥ ମହା-ବିଦ୍ୟାଳୟର ଅଧ୍ୟାପକ ଶ୍ରୀ ଅବନୀ କୁମାର ବରାଳ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ପର୍କରେ ସୂଚନା ଦେଇଥିଲେ । ମୁଖ୍ୟ ବକ୍ତା ଭାବରେ ଅଧ୍ୟାପକ ଶ୍ରୀ ସୀତାକାନ୍ତ ମହାନ୍ତି ଭାଷା ଓ ସାହିତ୍ୟ ପ୍ରତି ଛାତ୍ରମାନଙ୍କର କର୍ତ୍ତବ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ଦ୍ୱିତୀୟ ବାର୍ଷିକ ଛାତ୍ର ଶ୍ରୀ ବସନ୍ତ କୁମାର ପାଇକରାୟ ଏହି ଅନୁଷ୍ଠାନର ଆୟୋଜନରେ ବିଶେଷ ଦାୟିତ୍ୱ ଗ୍ରହଣ କରିଥିଲେ ।

ସାନ୍ଧ୍ୟ କଲେଜରେ ସ୍ୱତନ୍ତ୍ର ଛାତ୍ର ସଂସଦ ନ ଥିବାରୁ ଛାତ୍ର ମାନଙ୍କ ମଧ୍ୟରେ ଅସନ୍ତୋଷ ପ୍ରକାଶ ପାଉଛି । ଏଣୁ ଛାତ୍ର-ସଂସଦ ଗଠନ ଲାଗି ସ୍ୱୀକୃତି ପ୍ରଦାନ କରିବା ନିମନ୍ତେ କୁଳପତିଙ୍କୁ ଅନୁରୋଧ କରାଯାଇଛି ।

ଏତଦ୍‌ବ୍ୟତୀତ, ଏହି କଲେଜକୁ ସ୍ଥାୟୀ କରିବା ନିମନ୍ତେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ନିକଟରେ ଦୃଢ଼ ଦାବୀ ଉପସ୍ଥାପିତ କରାଯାଇଅଛି ।

# TEACHING STAFF, 1971.



*Sitting (L. to R.)* Smt. R. Bera, Smt. S. L. Patnaik, Sarvasri C. R. Das, A. Patnaik, K. C. Deb (Vice-Principal), B. Patel, M. D. Patnaik, C B Patnaik, S. K Mohanty, J Tripathy

*Standing (L to R.)* Sarvasri B S. Mishra, D. Chatterjee, A.N. Mishra, A.B. Mishra, U N. Dhal, B. Mishra, D C. Panda

THE COLLEGE ADVISORY BOARD



*Siting (L. to R.)* R.P. Misra, Asst. Genl. Secy., M Pattanaik, Advisor, K.C. Deb, Vice-Principal, B. Patel, Chief Advisor, B. Misra. Advisor, K. M. Nanda, Genl. Secy.

*Standing (L to R.)* P. Pradhan, Secy.-Magazine, C. Pattanaik, Secy.-Common Room, D.K. Pradhan, Asst. Secy.-Drama S. Das, Rep., A.B. Mohanty, Rep., P.K. Swain, Rep. P.K. Dash, Rep., U Rath, Secy-Drama.

ସର୍ବଶେଷରେ — ଏହି ସବୁ କାର୍ଯ୍ୟକ୍ରମକୁ ସଫଳ କରିବା ନିମନ୍ତେ ଯଥେଷ୍ଟ ସହଯୋଗ ପ୍ରଦାନ କରିଥିବା ହେତୁ ମୋର ସହପାଠୀ ବନ୍ଧୁ ତଥା ସାଂସ୍କୃତିକ ସଂସଦର କର୍ମକର୍ତ୍ତାଗଣଙ୍କୁ ମୁଁ ମୋର ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ଓ ବିଶେଷ ଉପଦେଷ୍ଟା ମଣ୍ଡଳୀର ଅଧ୍ୟାପକ-ଦ୍ୱୟ ସର୍ବଶ୍ରୀ ବୃନ୍ଦାବନ ପଟେଲ, ମୁରଲୀଧର ପଟ୍ଟନାୟକ ଓ ଭାନୁଶଙ୍କର ମିଶ୍ର ଏବଂ ଉପାଧ୍ୟକ୍ଷ ଶ୍ରୀ କ୍ଷିତିଶଚନ୍ଦ୍ର ଦେବଙ୍କ ସମୟୋପଯୋଗୀ ଉପଦେଶ ଓ ଆଶୀର୍ବାଦ ଆମକୁ ଅନୁପ୍ରେରିତ କରିଛି । ଅନ୍ୟାନ୍ୟ ବରେଣ୍ୟ ଅଧ୍ୟାପକଗଣଙ୍କୁ ମଧ୍ୟ ସେମାନଙ୍କର ସହଯୋଗିତା ନିମନ୍ତେ ମୁଁ ସାଂସ୍କୃତିକ ସଂସଦ ତରଫରୁ ପ୍ରଣତି ଜଣାଉଛି ।

— ଜୟହିନ୍ଦ୍ —

**ଶ୍ରୀ କିଶୋରୀ ମୋହନ ନନ୍ଦ**
ସାଧାରଣ ସଂପାଦକ

# ସ୍ୱର୍ଗତ ଛାତ୍ର ଜନାର୍ଦ୍ଦନ ଆଚାର୍ଯ୍ୟ

ପରଲୋକ ଦିବସ



୧୬, ନଭେମ୍ବର'୭୦

ତୃତୀୟ ବାର୍ଷିକ ଛାତ୍ର ଜନାର୍ଦ୍ଦନଙ୍କର ଆକସ୍ମିକ ବିୟୋଗ

ଏକ ଅନନ୍ତ - ସମ୍ଭାବନାର ଅପମୃତ୍ୟୁ

ଥିଲା ଅତୀବ ମର୍ମାନ୍ତିକ ।

ଜନାର୍ଦ୍ଦନ !

ତମର ଅଶରୀରୀ–ଅସ୍ତିତ୍ୱ

ଆମର ଅଶ୍ରୁଳ ଆବେଗରେ

ସିକ୍ତ - ମଂଜୁଳ ହେଉ !!

# ପ୍ରେମ ଭକ୍ତିର ସ୍ୱରୂପ


ଅଧ୍ୟାପକ
ଶ୍ରୀ କମଳାକାନ୍ତ ପାଣିଗ୍ରାହୀ


ଭକ୍ତର ଅଧୀନ ଭଗବାନ। ଶ୍ରୀକୃଷ୍ଣ ଭକ୍ତ-ବାଞ୍ଛା କଳ୍ପତରୁ ସଦୃଶ। ତେଣୁ ସେ କହିଛନ୍ତି—

"ନାହଂ ବୈକୁଣ୍ଠେ ତିଷ୍ଠାମି ଯୋଗୀନାଂ ହୃଦୟେ ନଚ,
ମଦ୍‌ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦଃ"

ଭକ୍ତିକୁ ବିଭିନ୍ନ ଧର୍ମଶାସ୍ତ୍ର ନାନାପ୍ରକାରରେ ବ୍ୟାଖ୍ୟା କରିଛନ୍ତି। 'ଭାଗବତ'ରେ ଭକ୍ତିକୁ 'ଐକ୍ୟ ସନ୍ଧିଦମ୍ବୁମ୍' ରୂପେ ବର୍ଣ୍ଣନା କରାଯାଇଥିବା ବେଳେ 'ଭକ୍ତିରସାମୃତସିନ୍ଧୁ'ରେ ଭକ୍ତିକୁ "ଅନ୍ୟାଭିଳାଷିତା ଶୂନ୍ୟଂ ଜ୍ଞାନକର୍ମାଦ୍ୟନାବୃତଂ ଆନୁ-କୂଲ୍ୟେନ କୃଷ୍ଣାନୁଶୀଳନଂ ଭକ୍ତିରୁତ୍ତମା" ବୋଲି କୁହାଯାଇଛି। ଅର୍ଥାତ ଐହିକ, ପାରତ୍ରିକ ଫଳକାମନା ରହିତ ଓ ଜ୍ଞାନ କର୍ମାଦିରୁ ମୁକ୍ତ ରହି ଆରାଧ୍ୟ ଦେବତାଙ୍କ ନିକଟରେ ଆତ୍ମ ନିବେଦନ ହିଁ ଉତ୍ତମ ଭକ୍ତି।

ନବଧା ଭକ୍ତିମାନଙ୍କ ମଧ୍ୟରେ ଦାସ୍ୟ, ସଖ୍ୟ, ଶାନ୍ତ, ବାତ୍ସଲ୍ୟ ଓ ମଧୁର ଭକ୍ତି ପ୍ରଧାନ ହେଲେ ହେଁ, ପ୍ରେମ ଭକ୍ତି ସର୍ବଶ୍ରେଷ୍ଠ। ବୈଷ୍ଣବ ସାହିତ୍ୟର ପ୍ରାମାଣିକ ଗ୍ରନ୍ଥ 'ରାଧା ତାପିନୀ', 'ନାରଦ ପଞ୍ଚରାତ୍ର', 'ଭାଗବତ', 'ବିଷ୍ଣୁ ପୁରାଣ', 'ଭକ୍ତିରସାମୃତ ସିନ୍ଧୁ', 'ଉଜ୍ଜ୍ୱଳ ନୀଳମଣି' ପ୍ରଭୃତିରେ ପ୍ରେମ-ଭକ୍ତିର ମାହାତ୍ମ୍ୟ ବିଶଦ୍ ଭାବରେ ବର୍ଣ୍ଣିତ। 'ରହସ୍ୟ

ମଞ୍ଜୁଷା'କାର ଦେବଦୁର୍ଲ୍ଲଭ ଦାସ ଏହାର ସୂଚନା ଦେଇ କହିଛନ୍ତି—

"ଗୋପୀ ପ୍ରେମ ମହାତ୍ମ୍ୟ ନାମେ ପାଠ
ଅଟଇ ପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ ।"

ପ୍ରେମ ଭକ୍ତର ଭକ୍ତମାନଙ୍କ ବ୍ୟତୀତ ଅନ୍ୟ ପନ୍ଥାର ସାଧକ, ମୁନି, ଋଷି ଏପରିକି ଦେବତାମାନେ ସୁଦ୍ଧା କୃଷ୍ଣରସ ଆସ୍ୱାଦନ କରିବାକୁ ଅକ୍ଷମ । ସନ୍ୟାସୀ, ଦେବତାମାନଙ୍କର ଶ୍ଲୋକ ଓ ବେଦ ପାଠ ଅପେକ୍ଷା ପ୍ରେମଭକ୍ତର ସାଧିକା ଗୋପାଙ୍ଗନାଙ୍କର କଣ୍ଠୁ ଭର୍ତ୍ସନା ଓ ଛନ୍ଦୋକ୍ତି ପ୍ରେମମୟ କୃଷ୍ଣଙ୍କୁ ଅଧିକ ଆନନ୍ଦ ପ୍ରଦାନ କରେ । ଏହି ପ୍ରେମଭକ୍ତର ଅନ୍ୟ ନାମ ଗୋପୀଭାବ ବା କାନ୍ତାଭାବ । କୃଷ୍ଣପ୍ରାପ୍ତି ନିମିତ୍ତ କାନ୍ତା ପ୍ରେମ ହିଁ ସର୍ବସାଧ ଶିରୋମଣି, ଗୋପୀ ଭାବରେ ଭାବିତ ହୋଇ କାୟ-ମନ ପ୍ରାଣରେ କୃଷ୍ଣଙ୍କୁ ସ୍ୱାମୀ ରୂପେ ଆରାଧନା କରିବା ସାଧକର ପ୍ରଥମ କର୍ତ୍ତବ୍ୟ । ଅନ୍ୟ ଭକ୍ତର ଉପାସକ ମୁକ୍ତିପ୍ରାପ୍ତ ହେଲେ ସୁଦ୍ଧା ଭକ୍ତିକୁ ସ୍ପର୍ଶ କରିପାରନ୍ତି ନାହିଁ । ଭକ୍ତି ପ୍ରାପ୍ତିର ଏକମାତ୍ର ପନ୍ଥା କାନ୍ତାପ୍ରେମ - ବା ଗୋପୀଭାବ । 'ରହସ୍ୟ ମଞ୍ଜୁଷା'କାର ପ୍ରେମଭକ୍ତିର ଗୁଣଗାନ କରି କହିଛନ୍ତି—

"ଏମନ୍ତ ସେବାକୁ କୋଟି ମୁକ୍ତି ଦେଇପାରି
ବିନା ଗୋପୀ ଭାବେ ଭକ୍ତି ଦେଇଟି ନ ପାରି ।
ଶ୍ରୀହରିଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର
ସେ ଭକ୍ତି ଅଟଇ କୋଠ ଗୋପୀମାନଙ୍କର ।
ଗୋପୀଙ୍କି ଭଜନ୍ତି ଭକ୍ତ ପ୍ରେମ ଭକ୍ତି ପାଇ
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ।"

ପ୍ରେମଭକ୍ତି ବୈଧୀ ଓ ରାଗାନୁଗା ଭେଦରେ ଦ୍ୱିବିଧ । ବିଧି ପ୍ରବର୍ତ୍ତିତ ଭଗବତ ଭଜନର ନାମ ବୈଧୀ ଅର୍ଥାତ୍ ଧର୍ମ ଓ ଶାସ୍ତ୍ର ଶାସନ ଉପରେ ଅନୁଷ୍ଠିତ ଭଗବତ କର୍ମ ଯଥା ଶ୍ରବଣ, କୀର୍ତ୍ତନ, ନାମ ସ୍ମରଣାଦି କାର୍ଯ୍ୟ ବୈଧୀ ଭକ୍ତିର ଅନ୍ତର୍ଗତ । ରାଗ ପ୍ରବର୍ତ୍ତିତ ବିଧି ମାର୍ଗରେ ଭଜନ ହିଁ ରାଗାନୁଗା । ଏହି ଭକ୍ତି ମୂଳରେ ଶ୍ରଦ୍ଧା, ସାଧୁସଙ୍ଗ, ଭଜନ, ଶ୍ରୀକାନ୍ତକଥା ନିହିତ ଥିବାରୁ 'ନାରଦ ଭକ୍ତିସୂତ୍ରରେ' ଏହାକୁ ପରମପ୍ରେମରୂପା ନାମରେ ନାମିତ କରାଯାଇଛି ।

ରାଗାନୁଗା ସ୍ୱକୀୟା, ପରକୀୟା ଭେଦରେ ଦୁଇ ପ୍ରକାର । ସ୍ୱକୀୟାରେ ଦେହଜ କ୍ଷୁଧା ଅଧିକ । ତେଣୁ ପ୍ରୀତି ଅପେକ୍ଷା ଏଥିରେ ରତିର ମାତ୍ରାଧିକ୍ୟ ପରିଲକ୍ଷିତ ହୋଇଥାଏ । କିନ୍ତୁ ପରକୀୟାରେ ଦର୍ଶନ ଇଚ୍ଛା ପ୍ରବଳ । ରତି ନୁହେଁ, ପ୍ରକୃତ ପ୍ରେମ ବା ପ୍ରୀତି ଏହାର ପ୍ରାଣପିଣ୍ଡ ।

ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟମାନେ ରାଗାନୁଗା ପଥର ଭକ୍ତ । ତେଣୁ ସେମାନେ ସ୍ୱକୀୟା ଅପେକ୍ଷା ପରକୀୟା ପ୍ରେମକୁ ଶ୍ରେଷ୍ଠ ସ୍ଥାନ ଦେଇଥାନ୍ତି । ସେମାନଙ୍କ ମତରେ ପ୍ରେମ ପ୍ରାକୃତ ମନର ଏକ ବିକାର ଓ ମନରୁ ମୋକ୍ଷବାସନା ଦୂରକରି ଶୁଦ୍ଧ ଚିତ୍ତରେ କାୟ ମନ ପ୍ରାଣରେ କୃଷ୍ଣ ଆରାଧନାରେ ବ୍ରତୀ ହେବା ବିଧେୟ । ଶୁଦ୍ଧା ଭକ୍ତିରେ ଜ୍ଞାନର ସମ୍ପର୍କ ଆଦୌ ନାହିଁ । କେବଳ କୃଷ୍ଣଙ୍କ ପ୍ରୀତି ଇଚ୍ଛାହିଁ ପ୍ରେମ । କବିରାଜ ଗୋସ୍ୱାମୀ ମହାଶୟ ପ୍ରେମ ସମ୍ବନ୍ଧରେ କହିଛନ୍ତି —

"ଆତ୍ମେନ୍ଦ୍ରିୟ ପ୍ରୀତି ଇଚ୍ଛା ତାରେ ବୋଲି କାମ
କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ଧରେ ପ୍ରେମ ନାମ ।"

ମନରେ ପ୍ରକୃତ ପ୍ରେମ ଉଦୟ ହେଲେ ଶ୍ରୀକୃଷ୍ଣ ଈଶ୍ୱର ଭାବେ ପ୍ରତୀତ ନ ହୋଇ ପରମ ତଥା ଅତ୍ୟନ୍ତ ଆତ୍ମୀୟ ପରି ବୋଧ ହୁଅନ୍ତି ।

ପ୍ରେମଭକ୍ତି ମଧ୍ୟରେ ରାଧା ଭାବ ହିଁ ସର୍ବସାଧଶିରୋମଣି । ଏହାକୁ କେତେକ ପରମ ରହସ୍ୟମୟ ଶୁଦ୍ଧାଭକ୍ତି ନାମରେ ନାମିତ କରିଥାନ୍ତି । କୃଷ୍ଣଙ୍କ ଅନନ୍ତ ଶକ୍ତି ମଧ୍ୟରେ ଚିତ୍, ମାୟା ଓ ଜୀବଶକ୍ତି ପ୍ରଧାନ । ସେଥିମଧ୍ୟରୁ ଚିତ୍‌ଶକ୍ତି ଆନନ୍ଦମୟ କୃଷ୍ଣଙ୍କର ପ୍ରକୃତ ସ୍ୱରୂପ, ରାଧା ମହାଭାବ ସ୍ୱରୂପିଣୀ ହ୍ଲାଦିନୀ ଶକ୍ତି, ହ୍ଲାଦିନୀ ଶକ୍ତିର ସାର ପ୍ରେମ ଓ ପ୍ରେମର ସାର ମାଦନାଖ୍ୟା ନାମକ ଅଧିରୂଢ଼ ମହାଭାବ । ରାଧା ଉପରୋକ୍ତ ସ୍ନେହ ମାର୍ଗର ପ୍ରେମିକା ହେତୁ ତାଙ୍କୁ ତଥା ତାଙ୍କ ପ୍ରେମକୁ ବୈଷ୍ଣବ ପ୍ରେମଭକ୍ତିରେ ଶ୍ରେଷ୍ଠାସନ ଦିଆ-ଯାଇଛି । 'ଚୈତନ୍ୟଚରିତାମୃତ'ର ରଚୟିତା ରାଧାଙ୍କର ଗୁଣ ବ୍ୟାଖ୍ୟାନ କରି କହିଛନ୍ତି—

"ପ୍ରେମର ପରମ ସାର ମହାଭାବ ଜାନି
ସେଇ ମହାଭାବ ସ୍ୱରୂପ ରାଧା ଠାକୁରାଣୀ ।"

ରାଧା-କୃଷ୍ଣ ଏକ ଏବଂ ଅଭିନ୍ନ । ଲୀଳାରସ ଆସ୍ୱାଦନ ପାଇଁ ଭିନ୍ନ ରୂପେ ଅଧିଷ୍ଠାନ କରିଥାନ୍ତି । ସେ ସର୍ବଦା କୃଷ୍ଣଗତ- ପ୍ରାଣା ଓ ସଚ୍ଚିଦାନନ୍ଦ ବିଗ୍ରହଙ୍କର ଏକାନ୍ତ ବଲ୍ଲଭା ।

ବୈଷ୍ଣବ ଶାସ୍ତ୍ରାନୁସାରୀ ମନରେ ଗୋପୀଭାବ ପୋଷଣ ପୂର୍ବକ ଭକ୍ତି ମାର୍ଗରେ ଅଗ୍ରସର ହେଲେ କୃଷ୍ଣଚନ୍ଦ୍ରଙ୍କ ସାନ୍ନିଧ୍ୟ ନିଶ୍ଚିତ । ଗୋପାଙ୍ଗନା ନିଜ ସୁଖ ବାସନାକୁ ତ୍ୟାଗ କରି ରାଧାକୃଷ୍ଣଙ୍କ ମିଳନ କରାଇ ଆନନ୍ଦ ଓ ତୃପ୍ତି ଲାଭ କରନ୍ତି । ସେମାନଙ୍କ ମନ ଶୁଦ୍ଧ ସୁବର୍ଣ୍ଣ ପରି ନିର୍ମଳ । ତେଣୁ 'ଚୈତନ୍ୟଚରିତାମୃତ'ରେ ବର୍ଣ୍ଣନା କରାଯାଇଛି—

"କାମ ଗନ୍ଧହୀନ ସ୍ୱାଭାବିକ ଗୋପୀପ୍ରେମ
ନିର୍ମଳ ଉଜ୍ଜ୍ୱଳ ଶୁଦ୍ଧ ଯେନ ଦଗ୍ଧ ହେମ ।"

ଏପରିକି କେତେକ ସ୍ଥାନରେ ରାଧାକୃଷ୍ଣଙ୍କୁ ଲତା ସହିତ ତୁଳନା କରି ଗୋପୀମାନଙ୍କୁ ପରିକଳ୍ପିତ ଲତାର ଶାଖା, ପତ୍ର, ପୁଷ୍ପ ରୂପେ କଳ୍ପନା କରାଯାଇଛି । ଏହାକୁ ମଞ୍ଜରୀ ଭାବ କୁହାଯାଏ । ସଖୀଗଣ ବିନା ରାଧା କୃଷ୍ଣଙ୍କ ପ୍ରେମର ପ୍ରକୃତ ରସ କଳନା କରି ହୁଏ ନାହିଁ । ବୈଷ୍ଣବ ପ୍ରାମାଣିକ ଗ୍ରନ୍ଥରେ କୁହାଯାଇଛି —

"ସଖୀ ବିନୁ ଏହି ଲୀଳା ପୁଷ୍ଟି ନାହିଁ ହୟ,
ସଖୀ ଲୀଳା ବିସ୍ତାରିଆଁ ସଖୀ ଆସ୍ୱାଦୟ ।"

ଶ୍ରୀମତୀ ଓ ଶ୍ରୀକୃଷ୍ଣଙ୍କର ସୁଖ ସଂପାଦନ କରିବା ସେମାନଙ୍କ ନିଯୋଜିତ କର୍ମ । କୃଷ୍ଣ-ଚନ୍ଦ୍ରଙ୍କ ତୃପ୍ତିବିଧାନ ନିମିତ୍ତ ସେମାନେ ବିବିଧ ବେଶରେ ଭୂଷିତ ହୋଇଥାନ୍ତି । ଏତଦ୍‌ଭିନ୍ନ ରାଧାକୃଷ୍ଣ ଓ ଗୋପୀମାନଙ୍କୁ ଶାସ୍ତ୍ରରେ ବିଭିନ୍ନ ଉପମା, ରୂପକ ଦ୍ୱାରା ବର୍ଣ୍ଣନା କରାଯାଇଛି ।

ପ୍ରେମଭକ୍ତିର ଅନ୍ତିମାବସ୍ଥା ଆତ୍ମନିବେଦନ ହେଉଛି ସାଧକମାନଙ୍କର ପ୍ରଧାନ କର୍ତ୍ତବ୍ୟ । ମନରୁ ଅହଂଭାବ ତ୍ୟାଗ କରି ଶ୍ରଦ୍ଧା, ତ୍ୟାଗ, ପ୍ରେମାଦି ସୋପାନ ଅତିକ୍ରମ କରି ଶେଷରେ ସାଧକଗଣ ଆତ୍ମନିବେଦନରେ ଉପସ୍ଥିତ ହୁଅନ୍ତି । କର୍ମର ଫଳପ୍ରାପ୍ତି ଆଶା ବର୍ଜନ କରି ଏକାନ୍ତ ଭାବରେ ଯୁଗଳାଙ୍କ ମୂର୍ତ୍ତିର ପଦପଲ୍ଲବରେ ନିଜକୁ ସମର୍ପଣ କରିବା ଭକ୍ତମାନଙ୍କର ପ୍ରଥମ ପ୍ରଧାନ କର୍ତ୍ତବ୍ୟ । ଅନ୍ୟ ଉପାୟରେ କହିଲେ ରାଧାକୃଷ୍ଣଙ୍କ ସେବାରେ ନିଜକୁ ନିଯୁକ୍ତ କରିବା ସର୍ବତୋଭାବେ ସେମାନଙ୍କର ଏକମାତ୍ର କର୍ତ୍ତବ୍ୟ । ତେଣୁ ବୈଷ୍ଣବ କବି ଅଭିମନ୍ୟୁ ବିନୀତ ଭାବରେ କୃଷ୍ଣଚନ୍ଦ୍ରଙ୍କ ପଦଧାରଣ କରି କିଶୋରୀ ରାଧିକାଙ୍କର ଦାସୀ ହେବାପାଇଁ ଭିକ୍ଷାମାଗି ଅନୁରୋଧ କରିଛନ୍ତି —

"ଓହେ ଧୀରାନନ୍ଦନ ହେ ମାଗୁଛି ପଦ ଧରି
ଓ କରିବ ଆଲୋ ଦାସୀ : ଡାକିଲେ କିଶୋରୀ ।"

ଅହଂ ଭାବ ସୃଷ୍ଟିର ସ୍ୱଭାବ । ବୈଷ୍ଣବ ପ୍ରେମଭକ୍ତିରେ ଅହଂକୃତିର ଅବକାଶ ନାହିଁ । ସାଧକ ଶେଷର ଦୃଷ୍ଟିରୁ କାନ୍ତା ନ ହେଲେ ମଧ୍ୟ ଭଗବାନ ପ୍ରେମର ପ୍ରସାର ନିମିତ୍ତ "ଏକୋଽହଂ ବହୁସ୍ୟାଂ"ର କଳ୍ପନା କରିଛନ୍ତି । ଜୀବାତ୍ମା ସର୍ବନିୟନ୍ତା ଈଶ୍ୱରଙ୍କର ଚୈତନ୍ୟର ଅଂଶବିଶେଷ । ସମଗ୍ର ବିଶ୍ୱରେ ନନ୍ଦନନ୍ଦନ କୃଷ୍ଣ ଏକମାତ୍ର ପୁରୁଷ । ବ୍ରହ୍ମା ଆଦି ସମସ୍ତ ଦେବତା ଓ ନରଗଣ ସେହାଙ୍କର ଶକ୍ତି ସ୍ୱରୂପ । ପଦ୍ମପୁରାଣର ପାତାଳ ଖଣ୍ଡରେ ବର୍ଣ୍ଣିତ ଯେ — "ଗୋବିନ୍ଦ ଇବ ପୁରୁଷୋ ବ୍ରହ୍ମାଦ୍ୟାଃ ସ୍ତ୍ରିୟଃ ଏବଚ ।
'ଉଦ୍ଧବସନ୍ଦେଶ' 'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ପୁରୁଷ ବେଶରେ କୃଷ୍ଣଙ୍କ ସାନ୍ନିଧ୍ୟ ଲାଭ ଅସମ୍ଭବ ବୋଲି ବର୍ଣ୍ଣିତ । ପ୍ରେମଭକ୍ତି ଅନୁସାରେ ଜୀବାତ୍ମା ଓ ପରମାତ୍ମାଙ୍କ ସମ୍ବନ୍ଧ ହେଉଛି —

ଜୀବ, ପରମ, ଶକ୍ତି ଶକ୍ତିମାନ ବା ଅଂଶ ଅଂଶୀର ସମ୍ବନ୍ଧ । ଜୀବ ବା ଭକ୍ତ ଦୟା, କ୍ଷମା, ସତ୍ୟ, ନ୍ୟାୟ, ପରୋପକାରାଦି ଗୁଣରେ ଭୂଷିତ ହୋଇଲେ ଅଂଶୀ ବା ପରମଙ୍କର ସାକ୍ଷାତ ଲାଭ କରେ । ଏହି ଭକ୍ତିରେ ଦୋଷୀ ପ୍ରତି ଦଣ୍ଡବିଧାନ ନାହିଁ । କର୍ମର ପରିଣତି ହେଉଛି ଦୋଷୀର ଯଥାବିଧି ଦଣ୍ଡ ।

ବୃନ୍ଦାବନ ମାଧୁର୍ଯ୍ୟ ଲୀଳାର ପ୍ରକାଶ ବୈଷ୍ଣବ ପ୍ରେମଭକ୍ତିର ଏକ ବିଶିଷ୍ଟ ଲକ୍ଷଣ । କୃଷ୍ଣଙ୍କର କିଶୋର ବୟସରେ କୃତ କର୍ମର ମହିମା ଗାନ କରିବା ଭକ୍ତମାନଙ୍କର ଏକତମ ଗୁଣ । ସେମାନଙ୍କ ସାଧନାର କାରଣ ଦର୍ଶାଇ ପୂର୍ବାଚାର୍ଯ୍ୟଗଣ କହିଛନ୍ତି — "ଶ୍ୟାମମେବ ପରଂରୂପମ୍ ପୁରୀ ମଧୁପୁରୀ ବରା
ବୟଃ କୈଶୋରକଃ ଧେୟମ ଆଦ୍ୟଏବ ପ ରରସଃ ।"

ସେମାନଙ୍କ ମତରେ ଦ୍ୱାରକା, ମଥୁରା, ବୃନ୍ଦାବନ ଯଥାକ୍ରମେ ପୂର୍ଣ୍ଣ ପୂର୍ଣ୍ଣତର ଓ ପୂର୍ଣ୍ଣତମ ସାଧନକ୍ଷେତ୍ର । କାରଣ, ଦ୍ୱାରକାରେ କୃଷ୍ଣ ଐଶ୍ୱର୍ଯ୍ୟମୟ ଓ ଶଙ୍ଖ, ଚକ୍ର, ଗଦା, ପଦ୍ମ ଚତୁର୍ଭୁଜ ହସ୍ତ ବସୁଦେବ । ମଥୁରାର କୃଷ୍ଣ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ମଣ୍ଡିତ ହେଲେହେଁ ବଂଶୀଧାରୀ ନୁହଁନ୍ତି । ତେଣୁ ସେ ପୂର୍ଣ୍ଣତର । କିନ୍ତୁ ବୃନ୍ଦାବନର କୃଷ୍ଣ ନଟବର ବେଶଧାରୀ ବେଣୁପାଣି । ଏଠାରେ ମାଧୁର୍ଯ୍ୟ ଲୀଳାର ଫଲ୍‌ଗୁ ଧାର ପ୍ରବାହିତ । ଉଜ୍ଜ୍ୱଳନୀଳମଣି, ରହସ୍ୟମଞ୍ଜରୀକାର ଓ ପୂର୍ଣ୍ଣତମ ଚନ୍ଦ୍ରୋଦୟର ନାଗରିକ ସ୍ୱ ସ୍ୱ ଗ୍ରନ୍ଥରେ ଏହାର ପ୍ରମାଣ ସ୍ଥିର କରିଯାଇଛନ୍ତି ।

ପ୍ରେମ ଭକ୍ତିର ସାଧକମାନେ ଅନାବିଳ ପ୍ରେମ ଓ ନିର୍ମଳ ଆନନ୍ଦର ଅଧିକାରୀ । ଗୋପୀକୃଷ୍ଣ ବା ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ଲୀଳାକୁ ଶୁଦ୍ଧଚିତ୍ତରେ ଦେଖିବାହିଁ ସେମାନଙ୍କର ସାଧନାର ଉଦ୍ଦେଶ୍ୟ । ଗୋପୀମାନଙ୍କୁ ବିଶେଷତଃ ରାଧାଙ୍କୁ ଜୀବ ଓ କୃଷ୍ଣଙ୍କୁ ପରମ ସହିତ ତୁଳନା କରି ଆଧ୍ୟାତ୍ମିକ ବ୍ୟାଖ୍ୟା ମଧ୍ୟ କରାଯାଏ । ଜୀବ-ପରମର ମିଳନ ସଙ୍କେତ ହେଉଛି ବଂଶୀ । ପ୍ରେମ ଭକ୍ତିରେ ବଂଶୀର ମାହାତ୍ମ୍ୟ ଏକ ନିରଙ୍କୁଶ ସ୍ୱାତନ୍ତ୍ର୍ୟର ଅଧିକାରୀ । ବଂଶୀ ସ୍ୱନ ଗୋପୀମାନଙ୍କୁ ଶ୍ରୀକୃଷ୍ଣଙ୍କ ସହ ମିଳିତ ହେଉଥିବାର ସୂଚନା ଦେଉଥିବାରୁ ଏହା ପ୍ରଣବ ସହିତ ତୁଳନୀୟ । କାରଣ ପ୍ରଣବ ଯେପରି ସୃଷ୍ଟିର ଆଦ୍ୟ ଝଂକାର, ବଂଶୀ ପ୍ରେମଲୀଳା ପ୍ରସାରର ତଦ୍ରୂପ ନିଦର୍ଶନ । ଏହି ବଂଶୀ ଧ୍ୱନି ଆଉ କିଛି ନୁହେଁ; ଏହା ଅସୀମର ସସୀମକୁ, ପରମାତ୍ମାର ଜୀବାତ୍ମାକୁ, ଅଂଶୀର ଅଂଶକୁ, ଅନନ୍ତର ଶାନ୍ତକୁ, ଅବ୍ୟକ୍ତର ବ୍ୟକ୍ତକୁ, ଜ୍ଞେୟର ଜ୍ଞାତାକୁ, ନିତ୍ୟ ଆବାହନ ଆହ୍ୱାନ ଓ ନିମନ୍ତ୍ରଣ ମାତ୍ର । ବିଦଗ୍ଧ ଚିନ୍ତାମଣିରେ ବଂଶୀର ମାହାତ୍ମ୍ୟ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । କବିଙ୍କ ଭାଷାରେ— "କରନାହିଁ ବିହିତ ଅଲୌକିକ ସେହିତ
ନାରାୟଣ ଛନ୍ଦ କି ସେ ସ୍ୱୟଂ ବିହିତ,
ଧ୍ୱନି ଯାହାର ବଳ ଭେଦେ ବ୍ରହ୍ମାଣ୍ଡବଳୀ
ଅବଳା ମାନଙ୍କେ ତହିଁ ପାରିବ କଳି ।"

ଗୋପୀଗଣ ବଂଶୀସ୍ୱନ ଶ୍ରବଣ ପୂର୍ବକ ଉପାସ୍ୟଙ୍କ ଲୀଳାରେ ସମ୍ମିଳିତ ହୋଇ ରୂପ, ରାଗ, ରତି, ରସ, ପ୍ରେମ ଲାଭ କରି ନିଜ ନିଜ ଜନ୍ମ ତଥା ଜୀବନକୁ ସାର୍ଥକ କରନ୍ତି 'ଚୈତନ୍ୟ ଚରିତାମୃତ', ଉଜ୍ଜ୍ୱଳ 'ନୀଳମଣି', 'ଭକ୍ତି ରସାମୃତ ସିନ୍ଧୁ' ଆଦି ଶ୍ରେଷ୍ଠ ପ୍ରାମାଣିକ ଗ୍ରନ୍ଥରେ ପ୍ରେମଭକ୍ତିର ମଞ୍ଜୁଳ ଓ ସୁବିସ୍ତୃତ ବ୍ୟାଖ୍ୟା କରାଯାଇଛି ।

ବାହ୍ୟ ଦୃଷ୍ଟିରୁ ଗୋପୀମାନେ ଗୋପାଳଙ୍କ ସ୍ତ୍ରୀ ଓ କୃଷ୍ଣଙ୍କର ଉପପତ୍ନୀ । କିନ୍ତୁ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଚାର କଲେ ସେମାନେ ଭଗବାନଙ୍କର ଲୀଳା ସଙ୍ଗିନୀ ; ଲୀଳାବିଗ୍ରହର ପୁଷ୍ଟି ସାଧନା ନିମିତ୍ତ ରାସମଣ୍ଡଳୀର ସେବିକା ରୂପେ କର୍ମ କରିବା ସେମାନଙ୍କ ତପ ଓ ଆରାଧନା । ପୂର୍ବଜନ୍ମର ପୁଣ୍ୟ ଫଳ ସେମାନେ ଭୋଗ କରୁଛନ୍ତି ତପସ୍ୟା ଦ୍ୱାରା ନାରାୟଣଙ୍କୁ ସନ୍ତୁଷ୍ଟ କରି ଗୋପପୁରେ ଜନ୍ମଗ୍ରହଣ କରିବେ ବୋଲି ବର ମାଗିଥିଲେ । ତେଣୁ ଗୋପୀ ଓ କୃଷ୍ଣଙ୍କ ମିଳନରେ ଲୌକିକ ଲଜ୍ଜା, ନିନ୍ଦା ଅପମାନର ସ୍ଥାନ ନାହିଁ । ଭାଗବତର ବସ୍ତ୍ରହରଣକୁ ନାସିକା କୁଞ୍ଚନ ନ କରି ଆଧ୍ୟାତ୍ମିକ ଦୃଷ୍ଟିରୁ ବିଚାର କରିବା ଉଚିତ । ଭକ୍ତ ଏହିଠାରେ ଉପାଧି ଓ ଆସକ୍ତି ରୂପକ ବସ୍ତ୍ର ତ୍ୟାଗ କରି ଶୁଦ୍ଧ ଚିତ୍ ରୂପ ସଙ୍ଗେ ମିଳିତ ହୋଇଯାଏ । ବୈଷ୍ଣବ ସାଧକଙ୍କ ନିକଟରେ ପଞ୍ଚବିଧ ମୁକ୍ତି କାମ୍ୟ ନୁହେଁ । ମୁକ୍ତିକୁ କୈତବ ଜ୍ଞାନ କରି ଅକୈତବ କରୁଣାପ୍ରାପ୍ତି ନିମିତ୍ତ ଯଥା ଉଦ୍ୟମ କରନ୍ତି । ତେଣୁ "ବିଦଗ୍ଧ ଚିନ୍ତାମଣି"କାର କହିଛନ୍ତି—

"ଅନନ୍ତ କୋଟି ବ୍ରହ୍ମାଣ୍ଡ ଈଶ୍ୱରୀ ଈଶ୍ୱର
ଅକୈତବ କରୁଣାକୁ ପରିତ୍ୟାଗ କର ।"

ଏ ପ୍ରସଙ୍ଗରେ ଶକ୍ତି ସାଧକ ରାମପ୍ରସାଦଙ୍କ ଉକ୍ତି ଉଦ୍ଧାର କରାଯାଇପାରେ, ଯଥା—

"ଚିନି ହଇତେ ଚାଏ ନା ମାଗୋ
ଚିନି ଖେତେ ଭାଲବାସି ।"

ସର୍ବପ୍ରକାର ମୁକ୍ତିର ଊର୍ଦ୍ଧ୍ୱରେ ରହି ସର୍ବଦା ନଟବର ବେଶଧାରୀଙ୍କ ସେବା କରିବା ପ୍ରେମଭକ୍ତି ସାଧକଙ୍କର ଅନ୍ତିମ କାମନା । "ଭକ୍ତିମାନ ଯଃ ସଃ ମେ ପ୍ରିୟଃ" ମାତ୍ର ଅନୁସରଣ କରି ବିଶ୍ୱାସରେ କୃଷ୍ଣପ୍ରାପ୍ତି ସମ୍ଭବପର ବୋଲି ପ୍ରଚାର କରନ୍ତି ; ସେମାନଙ୍କ ଯୁକ୍ତି ହେଉଛି—"ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର" । ସଚ୍ଚିଦାନନ୍ଦ ବିଗ୍ରହ ପରମେଶ୍ୱର ଓ ଅବତାରୀ, ତାଙ୍କୁ ସର୍ବକର୍ମର କାରଣ ରୂପେ ବର୍ଣ୍ଣନା କରି ବ୍ରହ୍ମସଂହିତାରେ କିବା କହିଛନ୍ତି —

"ଈଶ୍ୱରଃ ପରମଃ କୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହଃ
ଅନାଦି ରାଦିର୍ଗୋବିନ୍ଦ ସର୍ବ କାରଣ କାରଣମ୍ ।"

କୃଷ୍ଣଚନ୍ଦ୍ର ସର୍ବେଶ୍ୱର, ସର୍ବରୂପର ଆକର ଓ ସର୍ବରସରେ ପରିପୂର୍ଣ୍ଣ । ଜ୍ଞାନଚାତୁରୀ ମନ୍ତ୍ର ଦ୍ୱାରା ବୃନ୍ଦାବନ-ବିହାରୀଙ୍କର ନିତ୍ୟ-ନୂତନ ରୂପକୁ କଳ୍ପନା କରାଯାଇପାରେ ।

ଭଗବାନ ମାୟାର ଅଧୀଶ୍ୱର ଓ ଜୀବ ମାୟାଧୀନ । ତେଣୁ ମାୟାଧୀନ ଜୀବ ଓ ମାୟାଧୀଶ୍ୱର ଈଶ୍ୱରଙ୍କ ମଧ୍ୟରେ ଭେଦ ଅଛି କି ନାହିଁ, ତାହା ବିଚାର ବହିର୍ଭୂତ ହୋଇଥିବାରୁ ଅଚିନ୍ତ୍ୟ । ଏହି 'ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ' ଗୌଡ଼ୀୟ ରାଗାନୁଗା ପରକୀୟା ପ୍ରେମଭକ୍ତିର ମହାନନ୍ଦ ସ୍ୱରୂପ ।

ମାତ୍ର ଉତ୍କଳୀୟ ବୈଷ୍ଣବ ଧର୍ମର ପ୍ରେମଭକ୍ତି ପୂର୍ବ ବର୍ଣ୍ଣିତ ସଂପ୍ରଦାୟଙ୍କ ମାର୍ଗ ଠାରୁ କିଂଚିତ୍ ଭିନ୍ନ । ଏହି ଧର୍ମ ଅତି ପ୍ରାଚୀନ ହୋଇଥିବାରୁ ଏହାର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ରହିବା ସ୍ୱାଭାବିକ । 'ଜ୍ଞାନମିଶ୍ରା ଭକ୍ତି' ପ୍ରକୃତରେ ଉତ୍କଳୀୟ ସାଧନା । ଉତ୍କଳୀୟ ସାଧକମାନେ ଜ୍ଞାନଶୂନ୍ୟ ଭକ୍ତିକୁ ଅପୂର୍ଣ୍ଣ ମନେକରନ୍ତି । ଆରାଧ୍ୟ ଦେବତାଙ୍କ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ନ ଥାଇ ଭକ୍ତି କରିବା ଏକ ପ୍ରକାଣ୍ଡ ପ୍ରବଞ୍ଚନା । ଜ୍ଞାନ ଦ୍ୱାରା ଜ୍ଞେୟ ବସ୍ତୁକୁ ଜାଣିବା ପରେ ଭକ୍ତିର ଆଶ୍ରୟ ନେବା ବିଧେୟ । ଶାସ୍ତ୍ରାନୁସାରେ 'ଜ୍ଞାନେନ ଜ୍ଞେୟମାଲୋକ୍ୟ ତତୋ ଜ୍ଞାନମ୍ ପରିତ୍ୟଜେତ୍' । ଜ୍ଞାନ ଓ ଭକ୍ତି ସେମାନଙ୍କର ସାଧନାର ବସ୍ତୁ । ଶୁଦ୍ଧାଭକ୍ତି ପରିପକ୍ୱ ଅବସ୍ଥା ପ୍ରାପ୍ତ ହେଲେ ଜ୍ଞାନମିଶ୍ରାରେ ପରିଣତ ହୁଏ । ଶୁଦ୍ଧାଭକ୍ତି ଭଗବାନଙ୍କର ଲାବଣ୍ୟମୟ ବିଗ୍ରହ, ଏଥିରେ ସର୍ବସାଧାରଣଙ୍କର ଅଧିକାର ଅଛି କିନ୍ତୁ ଯୋଗୀମାନେହିଁ କେବଳ ଜ୍ଞାନମିଶ୍ରା ଭକ୍ତିର ଅଧିକାରୀ । ଭକ୍ତ ମନର ଦୃଢ଼ତା ଯୋଗ ରୂପ ସାଧନାର ବିଭାଗ ସୃଷ୍ଟି ହୋଇଛି । ସାଧକ ବା ଉପାସକ ମନରେ ଭକ୍ତିର ଦୃଢ଼ତା ନ ଜନ୍ମିବା ପର୍ଯ୍ୟନ୍ତ ତାଙ୍କର ଶୁଦ୍ଧାଭକ୍ତି ମାର୍ଗରେ ଉପାସନା କରିବା ଉଚିତ । ତା'ପରେ ସ୍ଥୂଳରୁ ସୂକ୍ଷ୍ମ, କଳ୍ପନାରୁ କଳ୍ପନାତୀତକୁ ଯିବାକୁ ହେବ । ଏଥିପାଇଁ ଦେହ ଓ ମନର ଶୁଦ୍ଧତା ଏକାନ୍ତ ଆବଶ୍ୟକ । କାୟଶୁଦ୍ଧି ନିମନ୍ତେ ଏମାନେ ଯୋଗକୁ ସାଧନା କ୍ଷେତ୍ରରେ ପ୍ରଥମ ସ୍ଥାନ ଦେଇଛନ୍ତି । ଯୋଗ ଦ୍ୱାରା ମନକୁ ଭୋଗ, କାମନା, ବାସନାରୁ ମୁକ୍ତ କରି ଜ୍ଞାନ ସାହାଯ୍ୟରେ ଭଗବାନଙ୍କ ସ୍ୱରୂପରେ ସମ୍ୟକ ଧାରଣା କରି ଭକ୍ତି ପ୍ରତି ଉନ୍ମୁଖ ହେବା ଉତ୍କଳୀୟ ବୈଷ୍ଣବ ସାଧନାର ପ୍ରକୃତ ମର୍ମ । 'ଜ୍ଞାନ' 'ଯୋଗ' ଓ 'ଭକ୍ତି' ପରସ୍ପର ପରସ୍ପରରେ ସମନ୍ୱାନ୍ୱିତ । 'ଜ୍ଞାନ' ନ ଥିଲେ ଆରାଧ୍ୟ ଦେବତାଙ୍କ ବିଷୟରେ ସଂଶୟ ଜାତ ହୁଏ । ପୁଣି 'ଯୋଗ' ନ ଥିଲେ ଭୋଗରେ ମନ ଲିପ୍ତ ରହେ, ତେଣୁ ସାଧନା ପଥରେ ସ୍ଖଳନ ହୁଏ । ପ୍ରକୃତ ପ୍ରେମଭକ୍ତି ପାଇଁ 'ଜ୍ଞାନ' ଓ 'ଯୋଗ' ଆବଶ୍ୟକ । ଏମାନଙ୍କର ପ୍ରେମ ଉଚ୍ଛ୍ୱାସଧର୍ମୀ ନୁହେ; ବରଂ ଜ୍ଞାନାଶ୍ରୟୀ ଯୋଗ ସମ୍ବନ୍ଧୀ । ସେଥିପାଇଁ ପ୍ରେମର ଶକ୍ତିସ୍ୱରୂପ ଅପେକ୍ଷା ଅଂଶସ୍ୱରୂପ ଉପରେ ଜ୍ଞାନମିଶ୍ରା ଭକ୍ତି ଅଧିକ ପ୍ରାଧାନ୍ୟ ଦେଇଛି । ଜ୍ଞାନ ଓ ଯୋଗମାର୍ଗର ପଥିକ ନିମିତ୍ତ ଗୁରୁ ପରମ୍ପରା ଅପରିହାର୍ଯ୍ୟ । ଶରୀରରେ ବିରାଟ ପୁରୁଷ, ଜଗତ, ଜୀବ ଓ ପରମର ପରିକଳ୍ପନା କରି ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ମଧ୍ୟ ବ୍ୟାଖ୍ୟା କରିଛନ୍ତି । ଏମାନଙ୍କ ମତରେ ପିଣ୍ଡବ୍ରହ୍ମାଣ୍ଡ ଏକ ଓ ବ୍ରହ୍ମାଣ୍ଡରେ ଯାହାର ବ୍ୟାପ୍ତି, ପିଣ୍ଡରେ ତା'ର ସ୍ଥିତି ।

ସ୍ୱକୀୟା ପ୍ରେମରେ ନିମଗ୍ନମାନ ଥାଇ ଉତ୍କଳୀୟ ଭକ୍ତମାନେ ଯୋଗରୁ ଭୋଗ, ଲୟରୁ ଲୀଳାକୁ ଗତି କରିବା ସଂଗେ ସଂଗେ ଯୁଗଳ ଗାୟତ୍ରୀ ମନ୍ତ୍ର ସାଧନ କରନ୍ତି । ଏମାନେ ସିଦ୍ଧ, ଅନାସକ୍ତ ଓ କାମନା ବାସନା ରହିତ ହୋଇଥିବାରୁ ଗୌଡ଼ୀୟଙ୍କ ପରି "ଭୋଗ" ଓ 'ଲୀଳା'ରେ ମୋହ, ଆବଦ୍ଧ ଆଦି ଦୋଷଦୁଷ୍ଟ ହୁଅନାହିଁ । କିନ୍ତୁ ଗୌଡ଼ୀୟମାନେ 'ଭୋଗ'ରୁ 'ଯୋଗ' ଓ 'ଲୀଳା'ରୁ 'ଲୟ'କୁ ଗତି କରୁଥିବାରୁ ସାଧନା କ୍ଷେତ୍ରରେ ସ୍ଖଳନର ସମ୍ଭାବନା ଅଧିକ । 'ଜ୍ଞାନମିଶ୍ରା ଭକ୍ତି'ରେ ନୀଳାଚଳବିହାରୀ ଜଗନ୍ନାଥ ଆରାଧ୍ୟ ଦେବତା ଅଟନ୍ତି । ତାଙ୍କୁ ଶୂନ୍ୟବ୍ରହ୍ମ, ନିରାକାର, ନିର୍ବିକଳ୍ପ, ଅନନ୍ତ, ଅନାଦି, ନିରାଲମ୍ବ, ନିରବୟବ, ନିରାଧାର, ଜ୍ଞାନାତୀତ, ସାଧନାତୀତ, ଧ୍ୟାନାତୀତ ଆଦି ବିଭିନ୍ନ ଭାବେ କଳ୍ପନା କରି ତାଙ୍କ ସମୀପରେ ଭକ୍ତି ଅର୍ଘ୍ୟ ଅର୍ପଣ କରିବା ଏମାନଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ । ଜଗନ୍ନାଥ ଅବତାରୀ ଓ ପୁରୁଷୋତ୍ତମ ଏମାନଙ୍କର ଶ୍ରେଷ୍ଠ ଧାମ ।

ବଳରାମ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଯଥାକ୍ରମେ 'ବେଦାନ୍ତ ଗୁପ୍ତଗୀତା' 'ଶୂନ୍ୟ ସଂହିତା' ଓ 'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ପ୍ରେମଭକ୍ତିର ମାହାତ୍ମ୍ୟ ପ୍ରକଟନ କରିଛନ୍ତି । ପ୍ରେମଭକ୍ତି ସବୁ ଭକ୍ତିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସତୀ ଅଙ୍ଗ ବିନା ଦର୍ଶନ ଅସମ୍ଭବ; ଏଥିରେ ପୂର୍ବସୂରୀଙ୍କ ସହ ଏମାନେ ଏକମତ ।

ଏତଦ୍‌ବ୍ୟତୀତ ଏମାନଙ୍କ ପ୍ରେମ ସମ୍ବନ୍ଧୀୟ ତାତ୍ତ୍ୱିକ ଆଲୋଚନା ବେଳେ ବେଳେ ଦୁର୍ବୋଧ ହେତୁ ମାୟାଚ୍ଛନ୍ନ ପ୍ରହେଳିକା ପରି ମନେହୁଏ । ସେଥିମଧ୍ୟରୁ ଶରୀର ମଧ୍ୟରେ ବ୍ରହ୍ମାଣ୍ଡ, ନିତ୍ୟରାସଲୀଳା, ଜୀବ-ପରମର ଅଖଣ୍ଡ ବିହାର ପରିକଳ୍ପନା, ଶୂନ୍ୟରେ ଗୋଲକ ବୃନ୍ଦାବନ ଆଦିର ବର୍ଣ୍ଣନା ଗୋଟିଏ ଲେଖାଏ ଦାର୍ଶନିକ ତଥ୍ୟ । ଯୋଗ, ଜ୍ଞାନ ଭକ୍ତି; ମୁକ୍ତି, ପିଣ୍ଡବ୍ରହ୍ମାଣ୍ଡ, ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ହଜ, ସମାଧି, ରାଧାକୃଷ୍ଣଙ୍କ ଲୀଳା ଓଡ଼ିଶୀ ବୈଷ୍ଣବ ପ୍ରେମ ଧର୍ମର ପ୍ରକୃତ ସ୍ୱରୂପ । ପିଣ୍ଡବ୍ରହ୍ମାଣ୍ଡ ବାଦ ଓ ଶୂନ୍ୟବାଦ ବର୍ଣ୍ଣନାରେ ପ୍ରତୀକ ପ୍ରୟୋଗ ଓ ପାରିଭାଷିକ ଶବ୍ଦଚୟନ ପାଠକଙ୍କ ନିକଟରେ ଏକ ଦୁର୍ଭେଦ୍ୟ ସଦୃଶ । ଶରୀରରେ ସ୍ୱର୍ଗ,ମର୍ତ୍ତ୍ୟ, ପାତାଳ, ସମସ୍ତ ତୀର୍ଥସ୍ଥଳ, କମାରଶାଳ, ଇଡ଼ାପିଙ୍ଗଳା, ତ୍ରିଶୁମୁନା, ତ୍ରିକୁଟ ଆଦିର ବର୍ଣ୍ଣନା ପ୍ରକୃତରେ ଓଡ଼ିଶୀ ପ୍ରେମଭକ୍ତିର ଉଲ୍ଲେଖଯୋଗ୍ୟ ବସ୍ତୁ ।

ପ୍ରେମ ଭକ୍ତିର ମାହାତ୍ମ୍ୟ ପ୍ରଚାର ଉଦ୍ଦେଶ୍ୟରେ ବହୁ ଗ୍ରନ୍ଥ ଓ ପ୍ରାମାଣିକ ଶାସ୍ତ୍ର ରଚନା କରାଯାଇଥିଲେ ମଧ୍ୟ, ଏହାର ପ୍ରକୃତ ସ୍ୱରୂପ ଅଦ୍ୟାପି ରହସ୍ୟାବୃତ । ସାଧକ, ସାଧ୍ୟ, ଭକ୍ତ ଭଗବାନ, ଜୀବ-ପରମ,ସାକାର ନିରାକାର, ସାନ୍ତ ଅନନ୍ତ, ଅଂଶ ଅଂଶୀ ପ୍ରଭୃତି ସମ୍ପର୍କରେ ଲୌକିକ ଓ ଆଧ୍ୟାତ୍ମିକ ଯୁକ୍ତି ମଧ୍ୟରୁ କେଉଁଟି ଅଭ୍ରାନ୍ତ ତାହା ଆଜି ମୁଦ୍ଧା ଅମୀମାଂସିତ । ତଥାପି ପ୍ରେମଭକ୍ତି ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ ଯେ— ବେଦ ବିହିତ କର୍ମାନୁଷ୍ଠାନ ଦ୍ୱାରା ଚିତ୍ତଶୁଦ୍ଧି ହେଲେ ଜ୍ଞାନର ବିକାଶ ହୁଏ ଓ ତଦ୍ଦ୍ୱାରା ଭଗବତ୍ ଶକ୍ତିର ପରିଚୟ ଅବଗତ ହେଲେ ଚିତ୍ତରେ ପ୍ରକୃତ ପ୍ରେମଭକ୍ତି ଉଦ୍ରେକ ହେବ ।

# ଦେଶବନ୍ଧୁଙ୍କ ଆଧ୍ୟାତ୍ମିକ ତୃଷା

ଅଧ୍ୟାପକ
**ଶ୍ରୀ ସୀତାକାନ୍ତ ମହାନ୍ତି**

ଜୀବନର ସାୟାହ୍ନରେ ଦେଶବନ୍ଧୁ ଚିତ୍ତରଞ୍ଜନ ଆଧ୍ୟାତ୍ମିକତା ପ୍ରତି ଗଭୀର ଭାବେ ଆକୃଷ୍ଟ ହୋଇପଡ଼ିଥିଲେ । କିନ୍ତୁ ତାଙ୍କର ଏହି ଆଧ୍ୟାତ୍ମିକ - ତୃଷା ସ୍ୱରାଜ୍ୟ - କର୍ମଧାରାରୁ ପଳାୟନ ଲକ୍ଷ୍ୟରେ ଅନୁପ୍ରେରିତ ହୋଇ ନ ଥିଲା; ବରଂ ଯୋଗୀ ସମ୍ଭବ ଯେ, ଭାରତୀୟ-ମହାଜାତିର ଚିର ଆକାଂକ୍ଷିତ ସ୍ୱରାଜ୍ୟର ରୂପାୟନ ଲାଗି ଏକମାତ୍ର ପନ୍ଥା, ଏହା ହିଁ ଥିଲା ତାଙ୍କର ଅନ୍ତରଙ୍ଗ ଅନୁଭୂତି ।

ଏହି କାରଣରୁ ସେ ଗାନ୍ଧିଜୀଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ପରୀକ୍ଷା ସ୍ୱରୂପରେ ଗୋଟିଏ ବର୍ଷ ଲାଗି ଗାନ୍ଧିଜୀଙ୍କ କଥାମତେ କାର୍ଯ୍ୟ କରିବାକୁ ଚୁକ୍ତିବଦ୍ଧ ହୋଇଥିଲେ । ଗାନ୍ଧିଜୀଙ୍କ ସମ୍ପର୍କରେ ଦେଶବନ୍ଧୁ କହିଛନ୍ତି — "ମହାତ୍ମାଜୀଙ୍କର ଯେ ଖୁବ୍ ନୈତିକ ଶୃଙ୍ଖଳା ଅଛି, ତା'ର ପରିଚୟ ମୁଁ ପାଇଛି । ସେ ଯାହା କହନ୍ତି, ଜଣେ ବଶ୍ୟସ୍ତ ସୈନିକ ପରି ଅଦ୍ଭୁତ କଠୋରତାର ସହିତ ପ୍ରାଣପଣେ ତାକୁ ପାଳନ କରିବାର କ୍ଷମତା ତାଙ୍କର ଅପୂର୍ବ । କିନ୍ତୁ ତାଙ୍କର ପ୍ରେରୋଦୃଷ୍ଟି ତଥା ଆଧ୍ୟାତ୍ମିକତା ସମ୍ବନ୍ଧରେ ହତାଶ ହେଲି । ତେଣୁ ଚୁକ୍ତିର ସମୟ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ତା'ପରେ ଅସହଯୋଗ ଛାଡ଼ିଦେଇ ସ୍ୱରାଜ୍ୟ ଦଳ ଗଠନ କରିଛି ।

ଏହାଛଡ଼ା ଚିତ୍ତରଞ୍ଜନ ମଧ୍ୟ ଏ ଯୁଗର ବିଶିଷ୍ଟ ଯୋଗୀ ଶ୍ରୀ ଅରବିନ୍ଦଙ୍କ ନିକଟରୁ ଆଧ୍ୟାତ୍ମିକ ଦିଗ୍ ଦର୍ଶନ ଲାଭ କରିବା ନିମନ୍ତେ ପ୍ରୟାସୀ ହୋଇଥିଲେ । କିନ୍ତୁ ଶ୍ରୀ ଅରବିନ୍ଦ ସମ୍ପୂର୍ଣ୍ଣ ରୂପେ ରାଜନୀତି ଛାଡ଼ିବା ଲାଗି ତାଙ୍କୁ ଉପଦେଶ ଦେବା ସଙ୍ଗେ ସଙ୍ଗେ ପରିଣତ ବୟସରେ ଅପଟୁ ସ୍ୱାସ୍ଥ୍ୟ ନେଇ ପୂର୍ଣ୍ଣ ଯୋଗସାଧନ କରିବା ସମ୍ଭବ ନୁହେଁ ବୋଲି କହିବାରୁ ଚିତ୍ତରଞ୍ଜନ ଏହି ଯୋଗସାଧନ ପ୍ରତି ଆଗ୍ରହଶୂନ୍ୟ ହୋଇପଡ଼ିଲେ । ବିଶେଷତଃ ରାଜନୀତିକୁ ବାଦ୍ ଦେଲେ ତାଙ୍କ ଜୀବନ ଯେ, ଏକ ମର୍ମାନ୍ତିକ ଅନୁଶୋଚନାରେ ପର୍ଯ୍ୟବସିତ ହେବ ଏହା ସେ ଗଭୀର ଭାବେ ଅନୁଭବ କରିପାରିଥିଲେ ।

ଏହିପରି ଏକ ମାନସିକ-ଶୂନ୍ୟତା ଭିତରେ ଥିବାବେଳେ ଦେଶବନ୍ଧୁ ଶ୍ରୀ ଅରବିନ୍ଦଙ୍କ କନିଷ୍ଠ ଭ୍ରାତା ଶ୍ରୀ ବାରୀନ୍ଦ୍ର ଘୋଷଙ୍କ ଠାରୁ ଶ୍ରୀ ଶ୍ରୀ ଠାକୁର ଅନୁକୂଳ-ଚନ୍ଦ୍ରଙ୍କ ଉଚ୍ଚ ଆଧ୍ୟାତ୍ମିକ ଦୃଷ୍ଟି ଓ ପାବନା-ସତ୍‌ସଙ୍ଗର କର୍ମଧାରା ସମ୍ପର୍କରେ ବିଶେଷ ଲାଭ କରି ଶ୍ରୀ ଶ୍ରୀ ଠାକୁରଙ୍କ ସାନ୍ନିଧ୍ୟଲାଭ କରିବାକୁ ଖୁବ୍ ବ୍ୟଗ୍ର ହୋଇଉଠିଥିଲେ । ବାରୀନ୍ଦ୍ର ଘୋଷ ଦ୍ୱୀପାନ୍ତରରୁ ଫେରି କିଛିଦିନ ପାବନା ଆଶ୍ରମରେ କଟାଇଥିଲେ । ତା'ପରେ ଦେଶବନ୍ଧୁଙ୍କ ସହଯୋଗିତାରେ 'ନାରାୟଣ' ପତ୍ରିକା ପ୍ରକାଶ କରି ସେଥିରେ 'ପାବନାର ମଧୁଚକ୍ର' ନାମରେ ଏକ ଲେଖା ପ୍ରକାଶ କରିଥିଲେ । ଏହି ପ୍ରବନ୍ଧ ହିଁ ଶ୍ରୀଶ୍ରୀ ଠାକୁର ଓ ପାବନା ସତ୍‌ସଙ୍ଗ ସମ୍ପର୍କରେ ଚିତ୍ତରଞ୍ଜନ ମନରେ ଖୁବ୍ ଉଚ୍ଚ ଧାରଣା ଆଣି ଦେଇଥିଲା । ଏହାଛଡ଼ା ନେତାଜୀ ସୁଭାଷଙ୍କର ସମଗ୍ର ପରିବାର ଶ୍ରୀ ଶ୍ରୀ ଠାକୁରଙ୍କର ସତ୍‌ନାମରେ ଦୀକ୍ଷିତ ହେବା ମଧ୍ୟ ଦେଶବନ୍ଧୁଙ୍କୁ ପ୍ରେରଣା ଯୋଗାଇଥିଲା ।

ଶ୍ରୀଶ୍ରୀ ଠାକୁର କଲିକତା ଆସି ମାଣିକତାଲା ଷ୍ଟ୍ରିଟ୍‌ରେ ରହିଥିବା ସମୟରେ ଦେଶବନ୍ଧୁ ତାଙ୍କୁ ସାକ୍ଷାତ କରି ସ୍ୱରାଜ୍ୟ, ଅସହଯୋଗ, ଚରଖା, ଖଦଡ଼ ଆଦି ବିଭିନ୍ନ ବିଷୟରେ ତାଙ୍କ ସହିତ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥିଲେ ।

ଇଂରେଜମାନେ 'ସେବା' ବଳରେ ଯେପରି ଏ ଜାତିର ଅନ୍ତର ଜୟ କରି ସେମାନଙ୍କ ବାଣିଜ୍ୟ ଓ ସଂସ୍କୃତିର ପ୍ରସାର କରିପାରିଛନ୍ତି, ଠିକ୍ ସେହିପରି ବାସ୍ତବ ସେବା ମାଧ୍ୟମରେ ହିଁ ପ୍ରକୃତ ସ୍ୱରାଜ୍ୟ ସମ୍ଭବ । ଇଂରେଜଙ୍କୁ ଖାଲି ଗାଳି ଦେଲେ ସ୍ୱରାଜ୍ୟ ଆସିଯିବନି — ବରଂ ଅନ୍ୟର ଦୋଷ ଦର୍ଶନରେ ନିଜର ଚରିତ୍ର ଦୋଷ-ଦୁଷ୍ଟ ହୁଏ । ପାଦ୍ରୀମାନଙ୍କ ଦ୍ୱାରା ଡାକ୍ତରଖାନା, ସ୍କୁଲ, ଛାପାଖାନା ସ୍ଥାପନ ଆଦି ଲୋକ-କଲ୍ୟାଣକର କାର୍ଯ୍ୟ ହିଁ ଆଜି ସେମାନଙ୍କୁ ଭାରତରେ ଲୋକପ୍ରିୟ କରିପାରିଛି— ଏହାହିଁ ଥିଲା ଶ୍ରୀ ଶ୍ରୀ ଠାକୁରଙ୍କର ମନ୍ତବ୍ୟ ।

ଏହିସବୁ କଥାରେ ଦେଶବନ୍ଧୁଙ୍କର ହୃଦ୍‌ବୋଧ ହୋଇଥିଲା । କିନ୍ତୁ ଏହି ଯୋଜନାର ସଫଳ ରୂପାୟନ ନିମନ୍ତେ ଆବଶ୍ୟକ ନିର୍ଦ୍ଦିଷ୍ଟ ସଂଖ୍ୟକ ଉପଯୁକ୍ତ ଯୁବ-କର୍ମୀ ଯୋଗାଡ଼ କରିବା ସଂପର୍କରେ ଦେଶବନ୍ଧୁଙ୍କ ମନରେ ସନ୍ଦେହ ହେବାରୁ ଶ୍ରୀ ଶ୍ରୀ ଠାକୁର କହିଲେ — ସମାଜ ସଂସ୍କାର ବିଶେଷ କରି ବିବାହ ସଂସ୍କାର ଗୁଲୁ ହେଲେ କୋଡ଼ିଏ, ପଚିଶ ବର୍ଷ ମଧ୍ୟରେ ଏ ଦେଶରେ ଉଚ୍ଚକୋଟୀର ଯୁବ-କର୍ମୀଙ୍କର ଅଭାବ ରହିବ ନାହିଁ ।

କିନ୍ତୁ ଏହି ମୃତ ଜାତି ଭିତରେ ଜୀବନର-ଦୃଷ୍ଟି ସୃଷ୍ଟି କରିବା ଯେ ଏକ ଦୁରୁହ ବ୍ୟାପାର ଏହାହିଁ ଥିଲା ଚିତ୍ତରଞ୍ଜନଙ୍କର ପରବର୍ତ୍ତୀ ସଂଶୟ । ଉତ୍ତରରେ ଶ୍ରୀ ଶ୍ରୀ ଠାକୁର କହିଥିଲେ — "ଏକ ଦ୍ରଷ୍ଟା-ପୁରୁଷ ପଛରେ ନ ଥିଲେ କୌଣସି

କାର୍ଯ୍ୟ କରିବା ସମ୍ଭବ ନୁହେଁ । ଅର୍ଜୁନର ଶ୍ରୀକୃଷ୍ଣ ଥିଲେ, ରାମଦାସ ଥିଲେ ବୋଲି ଶିବାଜୀ ମହାରାଷ୍ଟ୍ର ଜାତିକୁ ଗଢିପାରିଲେ, ଆଉ ଗୁରୁ ଚାଣକ୍ୟଙ୍କ ଯୋଗୁଁ ଚନ୍ଦ୍ରଗୁପ୍ତ ଅଜ୍ଞ ଚନ୍ଦ୍ରଗୁପ୍ତ ହୋଇପାରିଲେ । କିନ୍ତୁ ରାଣାପ୍ରତାପ ଏତେ କରି ମଧ୍ୟ କିଛି କରିପାରିଲେ ନାହିଁ; କେବଳ ତାଙ୍କ ପଛରେ କେହି ଦ୍ରଷ୍ଟା-ପୁରୁଷ ନ ଥିଲେ ବୋଲି ।

ଦେଶବନ୍ଧୁ ବାଳକ ପରି ସରଳ ଭାବରେ ପଚାରିଲେ— "ତେବେ କ'ଣ କରିବି ମୋତେ ବତାଇ ଦିଅନ୍ତୁ !"

ଶ୍ରୀ ଶ୍ରୀ ଠାକୁର କହିଲେ "ଖୁବ୍ ନାମ କରିବାକୁ ହେବ !"— ଠିକ୍ ତା'ର ପରେ ଦେଶବନ୍ଧୁ ଶ୍ରୀ ଶ୍ରୀ ଠାକୁରଙ୍କ ସତ୍ନାମରେ ଦୀକ୍ଷିତ ହେଲେ । ଶ୍ରୀ ଶ୍ରୀ ଠାକୁରଙ୍କ ମାତା ମନୋମୋହିନୀ ଦେବୀ ହିଁ ତାଙ୍କୁ ସତ୍ନାମ ଦେଇଥିଲେ । ଏହା ହେଉଛି ୧୯୨୪ ମସିହା ଜନ୍ମାଷ୍ଟମୀର ଘଟଣା । ମନୋବିଜ୍ଞାନ ସମ୍ମତ ଏହି ସାଧନା ଫଳରେ ମଣିଷର ଇଚ୍ଛା ଶକ୍ତିର ବୃଦ୍ଧି ତଥା ମଣିଷର ସାମଗ୍ରିକ ବିକାଶ ଯେ ସମ୍ଭବ, ତାହା ଚିତ୍ତରଞ୍ଜନଙ୍କର ହୃଦ୍‌ବୋଧ ହୋଇଥିଲା । ପଙ୍କିଳ ରାଜନୀତି ଠାରୁ ଦୂରେଇ ଯାଇ ପଲ୍ଲୀ ନବନିର୍ମାଣ ମାଧ୍ୟମରେ ବାସ୍ତବ ସ୍ୱରାଜ୍ୟ ଆନୟନ ତଥା ରୂପାୟନର ସମ୍ଭାବ୍ୟତା ସମ୍ପର୍କରେ ଶ୍ରୀ ଶ୍ରୀ ଠାକୁରଙ୍କ ଚିନ୍ତାଧାରା ତାଙ୍କ ମନରେ ଏକ ବୈଶିଷ୍ଟ୍ୟ-ଭାବ ସୃଷ୍ଟି କଲା । ଦେଶବନ୍ଧୁ ନିଜ ଭିତରେ କିପରି ଏକ ନୂତନ ଶକ୍ତିର ସ୍ପନ୍ଦନ ଓ ଦୃଷ୍ଟିର ପରିଚ୍ଛନ୍ନତା ଅନୁଭବ କରିପାରିଥିଲେ, ତାହା ଗାନ୍ଧିଜୀଙ୍କ ପାଖକୁ ଲେଖିଥିବା ନିମ୍ନୋକ୍ତ ପତ୍ରାଂଶରୁ ସ୍ପଷ୍ଟ ହେବ —

" I have learnt from my Guru ( Spiritual guide ) the value of truth in all our dealings I want you to live with him for a few days at least. Your need is not the same as mine, but he has given me strength, I did not possess before. Now I see things clearly which I saw dimly before".

( Young India–July, 1925 )

ଦେଶବନ୍ଧୁଙ୍କ ଅନୁରୋଧ କ୍ରମେ ମହାତ୍ମାଜୀ ୧୯୨୫ ମସିହା ମେ ମାସ ୨୯ ତାରିଖରେ ଆଶ୍ରମକୁ ଆସି ଶ୍ରୀ ଶ୍ରୀ ଠାକୁରଙ୍କ ସହିତ ନାନା ବିଷୟରେ ଆଲୋଚନା କରିଥିଲେ ।

"ମୁଁ ଯାହା କରୁଛି, ପ୍ରତି କର୍ମରେ ସେଥି ସହିତ ଧର୍ମକୁ ଜଡ଼ିତ ନ କଲେ ମୋତେ କିଛି ଭଲ ଲାଗୁନି" — ଦୀକ୍ଷା ଗ୍ରହଣର ଅବ୍ୟବହିତ ପରେ ବମ୍ବେରୁ ଫେରି ଚିତ୍ତରଞ୍ଜନଙ୍କର ଏପ୍ରକାର ମନ୍ତବ୍ୟକୁ ତାଙ୍କର ବହୁ ଅନୁଗାମୀ ଏକପ୍ରକାର କୁସଂସ୍କାର ବୋଲି ଗ୍ରହଣ କଲେ । ଆଶ୍ରମକୁ ଯାଇ ସେଠାରୁ ନୂତନ ଭାବେ ପଲ୍ଲୀ-ସଂଗଠନ

କାର୍ଯ୍ୟ ଆରମ୍ଭ କରିବା ସମ୍ପର୍କରେ 'ଫରଓ୍ୱାର୍ଡ' ପତ୍ରିକାରେ ପ୍ରକାଶିତ ତାଙ୍କର ଘୋଷଣା ମଧ୍ୟ ତାଙ୍କର ବନ୍ଧୁ ବାନ୍ଧବଙ୍କୁ ହତାଶ କଲା । ତଥାପି ଭଗ୍ନ-ସ୍ୱାସ୍ଥ୍ୟ ନେଇ ସେ ଆଶ୍ରମ ଯାଇଥିଲେ ଏବଂ ଅଳ୍ପଦିନ ସେଠାରେ ରହିଥିଲେ । ତାଙ୍କ ସ୍ୱାସ୍ଥ୍ୟର ମଧ୍ୟ ସେଠାରେ ଉନ୍ନତି ହେଉଥିଲା । ଅଥଚ ଆତ୍ମୀୟସ୍ୱଜନମାନଙ୍କ ବାଧବାଧକତା ଯୋଗୁଁ ଶ୍ରୀ ଶ୍ରୀ ଠାକୁରଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କୁ ଆଶ୍ରମ ଛାଡ଼ି ଦାର୍ଜିଲିଂ ଯିବାକୁ ପଡ଼ିଲା ।

ଦାର୍ଜିଲିଂ ଯିବା ପଥରେ ସତ୍‌ସଙ୍ଗର ସଂପାଦକ ସୁଶୀଲ ଚନ୍ଦ୍ର ବସୁଙ୍କୁ କହିଥିଲେ— "ମୁଁ ଆଶ୍ଚର୍ଯ୍ୟ ହେଉଛି ଯେ, ମୋ ଜୀବନର ସମସ୍ତ ଆଶା, ଆକାଂକ୍ଷା ଚିନ୍ତା, ଯାହା ଏତେଦିନ ଧରି ଅସ୍ପଷ୍ଟ ଛାୟା ଭଳି ରହିଥିଲା, ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗ ଲାଭ କରି ତାହା ଆଜି ସୁସ୍ପଷ୍ଟତର ହୋଇଉଠିଛି ।

ଦାର୍ଜିଲିଂରେ ଗାନ୍ଧିଜୀଙ୍କ ସହିତ ତାଙ୍କର ଯେଉଁ ଶେଷ ସାକ୍ଷାତ ହୋଇଥିଲା, ତାଙ୍କୁ ଦେଖି ସେତେବେଳେ ଗାନ୍ଧିଜୀ କହିଥିଲେ— "ଆଜି ଆପଣଙ୍କ ଚରିତ୍ରର ଆଧ୍ୟାତ୍ମିକ ବିକାଶ ହିଁ ସବୁଠାରୁ ପ୍ରବଳ ।"

ଦେଶବନ୍ଧୁଙ୍କର ଆକସ୍ମିକ ମୃତ୍ୟୁ ପରେ ତାଙ୍କର ଶ୍ରାଦ୍ଧବାସରରେ କାନ୍ଦି କାନ୍ଦି ମହାତ୍ମାଜୀ କହିଲେ— "ତାଙ୍କଠାରେ ଏପରି ମଧୁରତା ଆଉ କେବେ ଦେଖିନି ! ଠାକୁରଙ୍କ ସମ୍ବନ୍ଧେ ତାଙ୍କର ଅଦ୍ଭୁତ ଧାରଣା । ଠାକୁରଙ୍କ ସମ୍ପର୍କରେ ଦେଶବନ୍ଧୁ କେତେ କଥା ଯେ କହିଛନ୍ତି— ସେ କହୁଥିଲେ, ପୃଥିବୀରେ କେତେ ଲୋକତ ଦେଖିଛୁ, କିନ୍ତୁ ମଣିଷର ଏପରି brain (ମସ୍ତିଷ୍କ) ଯେ ଥାଇପାରେ ମୁଁ କେବେ କଳ୍ପନା କରି ପାରୁନି ।"

ଆଜି ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ଜନ୍ମ ଶତବାର୍ଷିକୀ ପାଳନ କରିବା ବେଳେ ତାଙ୍କ ଜୀବନର ଏହି ଉପେକ୍ଷିତ ଦିଗ୍‌ର ପୁନଃର ଜୀର୍ଣ୍ଣୋଦ୍ଧାର ଓ ଅନୁଶୀଳନ ତଥାପି ଏହି ମହାଜାତିର ଊର୍ଦ୍ଧ୍ୱଗମନ ଲାଗି ଏକ ଉଜ୍ଜ୍ୱଳ ରଶ୍ମିରେଖା ପରି ।

# "ତପସ୍ୱିନୀ"ର ସାର୍ଥକତା ଓ କବି ମେହେର

॥ ଶ୍ରୀ ଭଗବାନ ପଣ୍ଡା ॥
ତୃତୀୟ ବାର୍ଷିକ କଳା

ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ଚିନ୍ତାଧାରାର ପ୍ରବାହରୁ ଭାରତରେ ଯେଉଁ ଅଭିନବ ଜାଗରଣ ସୃଷ୍ଟି ହେଲା, ତାହାର ପ୍ରତି ସଚେତନ ହୋଇଉଠିଲେ ଭାରତୀୟ ମନୀଷୀଗଣ। ପୁଣ୍ୟଭୂମି ଭାରତବର୍ଷରେ ଶତାବ୍ଦୀ ବ୍ୟାପୀ ବିଦେଶୀ ଶାସକମାନଙ୍କ ଅତ୍ୟାଚାରର ଧ୍ୱଂସ ସାଧନ ନିମିତ୍ତ ସେମାନେ ସୃଷ୍ଟି କଲେ କଳା, ସାହିତ୍ୟ, ରାଜନୀତି ଏବଂ ଦର୍ଶନରେ ଅଭିନବ ବିପ୍ଳବ। ବୈପ୍ଳବିକ ପରିବର୍ତ୍ତନ ପାଇଁ ସେମାନେ ପାଇଲେ ବୈଦେଶିକ ଚିନ୍ତାଧାରାରୁ ଅଜସ୍ର ପ୍ରେରଣା। ସେମାନଙ୍କ ଚିନ୍ତାଧାରାର ଉଦ୍‌ବୋଧନରେ ଉଦ୍‌ବୁଦ୍ଧ ହେଲେ ଓଡ଼ିଆ ସାହିତ୍ୟ ଜଗତର ଯୁଗସ୍ରଷ୍ଟା ସାଧକଗଣ। କବିବର ରାଧାନାଥ ପାଶ୍ଚାତ୍ୟ ଚିନ୍ତାଧାରାରେ ପ୍ରଭାବିତ ହେଲେ ସବୁଠାରୁ ବେଶୀ ପରିମାଣରେ। ଘନ ତମିସ୍ରାର ଦୀର୍ଘ ଶର୍ବରୀକୁ ଧ୍ୱଂସ କରି ପ୍ରାତଃ କାଳରେ ଦୂର ଦିଗ୍‌ବଳୟରେ ବାଳଭାନୁ ଉଦିତ ହେଲେ ତା'ର ପ୍ରଥମ ରଶ୍ମିରେ ଉଦ୍‌ଭାସିତ ହୁଅନ୍ତି ନଭଶ୍ଚୁମ୍ବୀ ପ୍ରାସାଦମାଳିକା। ଭୂତଳଶାୟୀ କ୍ଷୁଦ୍ର ଦୁର୍ବାଦଳ ଆଦ୍ୟରଶ୍ମିର ସ୍ପର୍ଶ ପାଇବାକୁ ଅକ୍ଷମ ହୁଏ। ଗଙ୍ଗାଧର ଥିଲେ ସେହି ନଭଶ୍ଚୁମ୍ବୀ ପ୍ରାସାଦ ଭଳି ଉଜ୍ଜ୍ୱଳ ମନୀଷୀ। ଅଭିନବ ସାହିତ୍ୟ ପ୍ରତି ଦୃଷ୍ଟି ରଖି ସେ ରଚନା କରିଗଲେ ବିପୁଳ ପରିମାଣର ସାହିତ୍ୟ। ସେଥିପାଇଁ ସେ ଏ ଜାତିର ଚିର ନମସ୍ୟ, ବରେଣ୍ୟ ଏବଂ ବନ୍ଦନୀୟ।

୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖ ଦିନ ପବିତ୍ର ଝୁଲଣ ପୂର୍ଣ୍ଣିମା ତିଥିରେ ସମ୍ବଲପୁର ଜିଲା ବରପାଲି ଗ୍ରାମର କ୍ଷୁଦ୍ର ଏକ ତନ୍ତୁବାୟ ପରିବାରରେ ତାଙ୍କର ଜନ୍ମ। ଆର୍ଥିକ ଅନାଟନ ହେତୁ ଉଚ୍ଚ ଶିକ୍ଷା ଲାଭ କରିବାର ସୁଯୋଗରୁ ସେ ବଞ୍ଚିତ ହୋଇଥିଲେ ହେଁ ସାହିତ୍ୟ ସାଧନା ପ୍ରତି ତାଙ୍କର ଥିଲା ଗଭୀର ଆନ୍ତରିକତା ତଥା ଆସକ୍ତି। ଗୃହ କାର୍ଯ୍ୟରେ ନିଜ ପରିବାରବର୍ଗଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସାହିତ୍ୟ ସାଧନାରୁ ସେ ବିରତ ହୋଇ ନଥିଲେ। ତତ୍କାଳୀନ ବରେଣ୍ୟ ସାହିତ୍ୟିକ କବିବର ରାଧାନାଥଙ୍କ ରଚନା ଶୈଳୀରେ

ସେ ପ୍ରଭାବିତ ହୋଇଥିଲେ ହେଁ ତାଙ୍କ ଭଳି ପାଶ୍ଚାତ୍ୟ ସାହିତ୍ୟର ଅନୁଶୀଳନରେ ଗଙ୍ଗାଧର ପ୍ରଭାବିତ ହୋଇନାହାନ୍ତି । ଦେଶୀୟ ସଂସ୍କୃତି ଏବଂ ପରମ୍ପରା ରକ୍ଷା କରିବାକୁ ଯାଇ ସେ ଅନୁସରଣ କରିଛନ୍ତି ସାରଳା ଦାସ, କାଳିଦାସ ପ୍ରଭୃତି ଉପଯୁକ୍ତାଙ୍କୁ ଏବଂ ତାଙ୍କ କାବ୍ୟରାଜିର ବିଷୟବସ୍ତୁ ଆନୟନ କରିଛନ୍ତି ମହାଭାରତ, ରାମାୟଣ ଏବଂ ରଘୁବଂଶ ଇତ୍ୟାଦିରୁ । ଏହାର ଆଉ ଏକ କାରଣ ମଧ୍ୟ ରହିଛି । ଯୁଗସ୍ରଷ୍ଟା ରାଧାନାଥଙ୍କ ପରି ସେ ନଥିଲେ ଉଚ୍ଚ ଶିକ୍ଷିତ । ଇଂରାଜୀ ଅକ୍ଷର ଶିକ୍ଷାଲାଭ କରି ଥିଲା ତାଙ୍କ ସାଧନାର ବହୁ ଦୂରରେ । ତେଣୁ ସେ ପାଶ୍ଚାତ୍ୟ ସାହିତ୍ୟ ପଠନ କରିବାରୁ ବଞ୍ଚିତ ହୋଇଛନ୍ତି ଓ ପାଶ୍ଚାତ୍ୟ ଚିନ୍ତାଧାରା ତାଙ୍କୁ ପ୍ରଭାବିତ କରିପାରିନାହିଁ ।

କବି ଗଙ୍ଗାଧର ଏକାଧାରରେ ଲେଖକ ଏବଂ କବି ପଦବାଚ୍ୟ ହୋଇଥିଲେ ମଧ୍ୟ କାବ୍ୟ ତଥା ଖଣ୍ଡକାବ୍ୟ ରଚନା କରିବାରେ ସେ ଥିଲେ ସିଦ୍ଧହସ୍ତ । ତାଙ୍କ ରଚନାବଳୀ ମଧ୍ୟରେ ଇନ୍ଦୁମତୀ, ଉତ୍କଳଲକ୍ଷ୍ମୀ, ପଦ୍ମିନୀ, କୀଚକ ବଧ, ପ୍ରଣୟବଲ୍ଲରୀ, ତପସ୍ୱିନୀ ପ୍ରଭୃତି କାବ୍ୟ ଏବଂ ରସରତ୍ନାକର, ଭାରତୀ ବେଦନ, ଅହଲ୍ୟା ସ୍ତବ, ଅଯୋଧ୍ୟା ଦୃଶ୍ୟ ପ୍ରଭୃତି ଖଣ୍ଡକାବ୍ୟମାନ ପ୍ରଧାନ । କୀଚକ ବଧ, ପ୍ରଣୟବଲ୍ଲରୀ ପ୍ରଭୃତି ରଚନାକୁ କାବ୍ୟ ଆଖ୍ୟା ଦିଆଯାଇପାରେ ; ମାତ୍ର "ତପସ୍ୱିନୀ"କୁ କାବ୍ୟ ବୋଲି କୁହାଯାଇ ପାରିବ ନାହିଁ । ବରଂ ଏହା ହେଉଛି "ମହାକାବ୍ୟ" ପଦବାଚ୍ୟ । ତପସ୍ୱିନୀ ହେଉଛି କବିଙ୍କର ଏକ ସାର୍ଥକ ସୃଷ୍ଟି । ମହର୍ଷି ବାଲ୍ମୀକିଙ୍କ ରାମାୟଣ ତଥା ଭବଭୂତିଙ୍କ ଉତ୍ତର ରାମଚରିତରୁ ଏହାର ବିଷୟବସ୍ତୁ ଆନୀତ । କବିବରଙ୍କ ରଚନା ଶୈଳୀର ପ୍ରଭାବରେ କବି ଗଙ୍ଗାଧର ଏହାକୁ ରଚନା କରିଛନ୍ତି ସତ୍ୟ ; ମାତ୍ର ଏଥିରେ କବିଙ୍କର ମୌଳିକତା ତଥା ସ୍ୱକୀୟତା ପ୍ରତି ରହିଛି । ଲୋକାପବାଦରୁ ରକ୍ଷା ପାଇବା ନିମିତ୍ତ ପ୍ରଜାବତ୍ସଳ ରାମଚନ୍ଦ୍ରଙ୍କ ଦ୍ୱାରା ନିର୍ବାସିତା ହୋଇ ରାଜରାଜେଶ୍ୱରୀ ସୀତାଙ୍କ ବନଭୂମିରେ କାଳାତିପାତ ବିଷୟ ତପସ୍ୱିନୀ କାବ୍ୟର ବର୍ଣ୍ଣିତ ବସ୍ତୁ । ରାମଚନ୍ଦ୍ରଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ମହର୍ଷି ବାଲ୍ମୀକିଙ୍କ ଆଶ୍ରମରେ ଜୀବନଯାପନ କରିବାର ସମସ୍ତ ଘଟଣାବଳୀ ଏଥିରେ ସନ୍ନିବେଶିତ । ଏକ ସୁରୁଚିପୂର୍ଣ୍ଣ ବିଷୟବସ୍ତୁର ଅବତାରଣା କରିବା ସଙ୍ଗେ ସଙ୍ଗେ ସୀତାଙ୍କ ଦୁଃଖରେ ପ୍ରକୃତିର ସମବେଦନା ଏଥିରେ ଅଧିକ ରୁଚିମନ୍ତ ଏବଂ ସୁସ୍ପଷ୍ଟ ହୋଇଉଠିଛି । ତେଣୁ ଗଙ୍ଗାଧର ଯେ ଉତ୍କଳର ଓ୍ୱାର୍ଡସଓ୍ୱାର୍ଥ ଥିଲେ ତାହା କହିବା ବାହୁଲ୍ୟ ମାତ୍ର ।

ତପସ୍ୱିନୀ ନାମକରଣ ପାଇଁ କବି ଗଙ୍ଗାଧର ସୂଚନା ପାଇଛନ୍ତି ରଘୁବଂଶରୁ । ଅଧ୍ୟାପକ ନଟବର ସାମନ୍ତରାୟଙ୍କ ମତରେ ଯେଉଁ କଳଙ୍କିନୀ ଦ୍ୱାରା ରଘୁବଂଶ କଳଙ୍କିତ ବୋଲି ଉଲ୍ଲିଖିତ ସେହି କଳଙ୍କିନୀ ବୋଧହୁଏ ସ୍ୱୀୟ କଳଙ୍କର ଦୂରୀକରଣ ପାଇଁ ବାଲ୍ମିକୀ ଆଶ୍ରମରେ ଯାପନ କରିଛନ୍ତି ତାପସ-ତାପସୀଙ୍କ ଗହଣରେ ତପସ୍ୱିନୀ ଜୀବନ

ଏବଂ ସେହିଠାରେ ସ୍ୱାମୀଙ୍କ ଗୁଣ ଗାନ କରିଥିବାରୁ ସେ "ତପସ୍ୱିନୀ" ନାମରେ ପରିଚିତା ।

ସୀତା ଥିଲେ ଜନକ ମହର୍ଷିଙ୍କର ପାଳିତା କନ୍ୟା । ତାଙ୍କ ଜନ୍ମବୃତ୍ତାନ୍ତ ଆଲୋଚନା କଲେ ଜଣାଯାଏ ଯେ, ଯଜ୍ଞ ନିମିତ୍ତ ମହର୍ଷି ଜନକ ଭୂମି କର୍ଷଣ କରୁଥିଲାବେଳେ ଭୂମିରୁ ଜନ୍ମଗ୍ରହଣ କରିଛନ୍ତି ବୈଦେହୀ । ତେଣୁ ମାଟିର କନ୍ୟା ସେ— ମାଟିରେ ମିଶିଯିବାହିଁ ତାଙ୍କର ଧର୍ମ । ସେହି ଦୃଷ୍ଟିରୁ ସେ ଅବଶେଷରେ ପାତାଳ ଗର୍ଭରେ ଆଶ୍ରୟ ଗ୍ରହଣ କରିଥିବା କଥା ଆମ୍ଭେମାନେ ରାମାୟଣରୁ ଅବଗତ ହେଉଁ ।

ବାଲ୍ୟକାଳରୁ ସୀତାଙ୍କର ରହିଥିଲା ବଣଜଙ୍ଗଲର ଘନ ଅରଣ୍ୟାନୀ ପାଇଁ ମମତା । ବନଭୂମିର ଶୋଭା ଶ୍ରୀ ଏବଂ ମୁନିଋଷିମାନଙ୍କର ଶାନ୍ତ, ସରଳ, ନିଷ୍କପଟ, ଉଦାର ଚାଲିଚଳଣି ବୋଧହୁଏ ତାଙ୍କୁ ବେଶୀ ଆକୃଷ୍ଟ କରିଥିଲା । ସେଥିପାଇଁ ପିତୃସତ୍ୟ ପାଳନ କରିବା ନିମିତ୍ତ ରାମଚନ୍ଦ୍ର ଯେତେବେଳେ ବନାଭିମୁଖୀ ହେଲେ ସେତେବେଳେ ପତିପରାୟଣା ବୈଦେହୀ ସ୍ୱାମୀଙ୍କୁ ଅନୁସରଣ କରି ପଶ୍ଚାତ୍‌ଗାମିନୀ ହୋଇଥିଲେ । ବରଂ ରାମଚନ୍ଦ୍ରଙ୍କ ଶତ ବାଧାସତ୍ତ୍ୱେ ସେ ତାଙ୍କୁ ଅନୁରୋଧ କରିଛନ୍ତି ବନ ମଧ୍ୟରେ ନିଜର ସହଚାରିଣୀ କରିବା ପାଇଁ ।

ରାବଣ ବଧ ପରେ ସୀତାଙ୍କୁ ଉଦ୍ଧାର କରି ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିବା ଘଟଣାର ଅତ୍ୟନ୍ତ ପରେ ସୀତା ହୋଇଛନ୍ତି ଗର୍ଭବତୀ । ଏପରି ସମୟରେ ସେ ସ୍ୱାମୀଙ୍କୁ ଅନୁରୋଧ କରିନ୍ତି ତାଙ୍କୁ ବନମଧ୍ୟରେ କିଛିଦିନ ପାଇଁ ଛାଡ଼ି ଆସିବାକୁ । କାରଣ ତାଙ୍କ ମନରେ ବହୁ ଦିନରୁ ଏକ ଆଶା ବଳବତୀ ହୋଇଉଠିଥିଲା ମୁନିକନ୍ୟାଙ୍କ ସହିତ ଆଶ୍ରମ ଜୀବନଯାପନ କରିବାପାଇଁ । ସୀତାଙ୍କ ଭାଗ୍ୟଲିପିରେ ଲେଖା ହୋଇଛି ଦୁର୍ଦ୍ଦିନ । ତେଣୁ ଲୋକାଭିରାମ ରାମଚନ୍ଦ୍ର କୌଶଳରେ ସୀତାଙ୍କୁ ବନମଧ୍ୟକୁ ପ୍ରେରଣ କରିଛନ୍ତି ଏବଂ ତାହାହିଁ ହୋଇଛି ତାଙ୍କ ଜୀବନର ଅବଶିଷ୍ଟ ସମୟ ପାଇଁ ବାସସ୍ଥଳୀ । ଏକଥା ଯେତେବେଳେ ସେ ଉପଲବ୍‌ଧି କରିଛନ୍ତି ସେତେବେଳେ ଦୁଃଖରେ ତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇଯାଇଛି । କିନ୍ତୁ ଏଥିରେ ସେ ନିଜ ସ୍ୱାମୀଙ୍କ ଉପରେ ବିରାଗ୍‌ଯୁକ୍ତ ହୋଇନାହାନ୍ତି । ବରଂ ପତି ଗୁଣ ସ୍ମରଣ କରି "ଭାଗ୍ୟଂ ଫଳତି ସର୍ବତ୍ର" ନୀତିରେ ଧର୍ମିକୁ ନିନ୍ଦା କରିଛନ୍ତି । ଅଥଚ ସ୍ୱାମୀଙ୍କ ପ୍ରତିମୂର୍ତ୍ତି ତାଙ୍କ ମାନସପଟରେ ଉଙ୍କି ମାରୁଛି । ଏଥିପାଇଁ ତପସ୍ୱିନୀର ପ୍ରଥମ ସର୍ଗରେ କବି ବର୍ଣ୍ଣନା କରିଛନ୍ତି :—

" ସଜ୍ଜା ଲଭି ମହାଦେବୀ କେତେକାଳ ପରେ
ଅନାଇଲେ ଦଶଦିଗ ନୟନ କାତରେ
ଦିଶିଲା ସକଳ ଦିଗ ରାମଚନ୍ଦ୍ରମୟ
ବସିଛନ୍ତି ପ୍ରଭୁ ହୋଇ ବିଷର୍ଣ୍ଣ ହୃଦୟ " ।

ଏହାପରେ ଆସିଛି ବାଲ୍ମୀକିଙ୍କ ସହ ସୀତାଙ୍କ ପରିଚିତି । ମୁନି-କନ୍ୟାମାନଙ୍କ ସନ୍ଦର୍ଶନରେ ସନ୍ଦେଶ ପ୍ରାପ୍ତ ହୋଇ ମହର୍ଷି ବାଲ୍ମୀକି ସୀତାଙ୍କ ପାଖକୁ ଦଉଡ଼ି ଆସିଛନ୍ତି ଦ୍ରୁତଗତିରେ । ଉଦ୍ଦେଶ୍ୟ – ନିରାଶ୍ରୟା ସୀତାଙ୍କୁ ଆଶ୍ରୟ ଦେବେ ନିଜ ଆଶ୍ରମରେ । ଏହି ଦୃଶ୍ୟର ଅବତାରଣା କରି କବି ମେହେର ବର୍ଣ୍ଣନା କରିଛନ୍ତି ଯେ, ସୀତା ସେହି ସମୟରେ ତପସ୍ୱିନୀ ବେଶ ଧାରଣ ପୂର୍ବକ ଉପବେଶନା ହୋଇଛନ୍ତି । ଦଣ୍ଡାୟ-ମାନରତ ବାଲ୍ମୀକି ଏବଂ ଉପବେଶନା କନକ ପ୍ରତିମା ସୀତାଙ୍କ ମୌନମୂର୍ତ୍ତିକୁ ତୁଳନା କରି କବି ମେହେର କହିଛନ୍ତି :—

"ଶ୍ୱେତଶ୍ମଶ୍ରୁକେଶ ବିଭୂଷିତ ବପୁ ସୌମ୍ୟ ମୂରତି
ବାଲ୍ମୀକି ମହର୍ଷି ସମୀପେ ହେମ ଗଢ଼ିଶା ସତୀ,
ଦିଶିଲେ ଯେମନ୍ତେ ତୁଷାର ତନୁ ହିମାଦ୍ରି ତଳେ
ତପସ୍ୱିନୀ ଉମା ମଉନେ ରହିଛନ୍ତି ନିଷ୍ଠଳେ" ।

ବାସ୍ତବିକ୍ ଉପରୋକ୍ତ ଆଲୋଚନା ଦ୍ୱାରା ସୀତାଙ୍କ ତପସ୍ୱିନୀ ଜୀବନର ଆଭାସ ସ୍ପଷ୍ଟ ପ୍ରତୀୟମାନ ହୁଏ ।

ନିଜ ସ୍ୱାମୀଙ୍କ ବଂଶ ତଥା ସ୍ୱାମୀଙ୍କର ମଙ୍ଗଳସାଧନ କରିବା ହିନ୍ଦୁ ନାରୀର ପରମ ଆଦର୍ଶ । ସତୀ ସୀତା ଏଥିରୁ ବିଚ୍ୟୁତା ହୋଇନାହାନ୍ତି । ତେଣୁ ଚତୁର୍ଥ ସର୍ଗରେ ତମସାରେ ଅବଗାହନ କରିବାକୁ ଯିବାର ଅବ୍ୟବହିତ ପୂର୍ବରୁ ଊଷା ନିକଟରେ ସେ ନିଜ ପତି ଦେବତାଙ୍କ ବଂଶର ମଙ୍ଗଳ ସାଧନ ପାଇଁ ପ୍ରାର୍ଥନା କରିଛନ୍ତି । ଏହି ପରିପ୍ରେକ୍ଷୀରେ ସେ କହିଛନ୍ତି :—

"ଶୁଭ୍ର ସଉରଭ ରସିକେ,
ଶୁଭ ସମ୍ପାଦନା ହୁଅ ରଘୁବଂଶକେ" ।

ତପସ୍ୱିନୀର ଜୀବନ ଭିତରେ ସୀତା ଆଶ୍ରମର ସକଳ କର୍ମରେ କର୍ମନିଷ୍ଠା ତପଶ୍ଚାରିଣୀ । ବନଦେଶରେ ପ୍ରବେଶ ମାତ୍ରକେ ସେ ଅନାସକ୍ତ ଭାବରେ ସ୍ୱକୀୟ ସମସ୍ତ ସୌନ୍ଦର୍ଯ୍ୟ ବିତରଣ କରିଦେଇଛନ୍ତି ପୁଷ୍ପ ଗହଣରେ । ସୀତାଙ୍କ ଶରୀରର କାନ୍ତି ଓ ସୁରଭିରେ ସେମାନେ ପ୍ରତିମାନ ଓ ସୁରଭିତ ହୋଇଉଠିଛନ୍ତି । ପୁନଶ୍ଚ ସେହି କାନ୍ତିର ମାଧୁରିମାରେ ପୁଷ୍ପ ହୋଇଛି ଅମୃତୋପମ ମଧୁରସରେ ଭରପୂର । ଏହାର ଏକ ସ୍ପଷ୍ଟ ଆଲେଖ୍ୟ ପ୍ରତିଭାତ କରିବାକୁ ଯାଇ କବି ଯଥାର୍ଥରେ କହିଛନ୍ତି :—

"ସତୀ କାନ୍ତି ଥିଲା ଅମୃତ ସମ
ପୁଷ୍ପେ ହେଲା ମଧୁ ଅମୃତୋପମ

ମାର୍ଦ୍ଦବ ମାଞ୍ଜିବ ଯେ ରୂପ ପାଇ
ହେଲେ ପୁଷ୍ପକୁଞ୍ଜ ଅଙ୍ଗରେ ସ୍ଥାୟୀ
ସତୀ ହୋଇ ତପସ୍ୱିନୀ
ନୀରସ ଜୀବନେ ନିସ୍ପୃହ ଶଯ୍ୟାରେ ହେଲେ ବନ ବିଳାସିନୀ" ।

କେବଳ ସେତିକି ନୁହେଁ; ସତୀ ସୀତାଙ୍କ ଠାରୁ କାନ୍ତି ନେଇ ଟିଣ୍ଟିଣୀ ଏବଂ ଅନ୍ୟାନ୍ୟ ନଦୀ ମଧ୍ୟ ନିଜର ଶୋଭାଶ୍ରୀ ବର୍ଦ୍ଧନ କରିଛନ୍ତି । ଅନ୍ୟ ପକ୍ଷରେ ବାଲ୍ମୀକି ଆଶ୍ରମର ଶାନ୍ତି, ନିଷ୍ଠା, ତଥା ନିୟମ ଅବଲମ୍ବନ କରି ଅନ୍ୟ ତାପସୀଙ୍କ ପରି ଜାନକୀ ମଧ୍ୟ କର୍ମରତା ହୋଇଯାଇଛନ୍ତି । ସୀତାଙ୍କ କର୍ମରତ ଜୀବନ ଦେଖି ସତୀ ଅରୁନ୍ଧତୀ ତାଙ୍କୁ ଆଦରର ସହିତ ପାଖକୁ ଡାକି ଆଣିଛନ୍ତି ଏବଂ ସାନ୍ତ୍ୱନା ଶୁଣାଇଛନ୍ତି । ତାଙ୍କ ମତରେ ସୀତା ହିଁ ଶ୍ରେଷ୍ଠା ହୋଇଛନ୍ତି ପ୍ରକୃତ ଏକ ତପସ୍ୱିନୀ ରୂପେ । କବି ମେହେରଙ୍କ ନିମ୍ନ ଉଦାହରଣ ଏହାର ସ୍ପଷ୍ଟ ଆଲୋକ ପ୍ରଦାନ କରେ । ସେ କହିଛନ୍ତି :—

"ଦୈବ ସ୍ୱଭାବେ ତୁ ତପସ୍ୱିନୀ
ଦର୍ଶନ ମାତ୍ରେ ମୁଁ ପାରିଛି ଚିହ୍ନି ।
ପବିତ୍ର ପ୍ରାଣ ତୋ ଅତି କୋମଳ
ଘୋର ତପସ୍ୟାର ଦୁର୍ଲ୍ଲଭ ଫଳ
ପୁଣ୍ୟ ଲତିକାର ଫୁଲ
ନବ ତାପସୀଙ୍କ ଆଚରିତ ଶ୍ରମ ନୁହଇ ତା' ଅନୁକୂଳ ।"

କାବ୍ୟର ଷଷ୍ଠ ଓ ସପ୍ତମ ସର୍ଗର ସମାପ୍ତିଶ ସ୍ଥିତି ମଧ୍ୟରେ, ଏକ ଦିଗରେ ସୀତାଙ୍କ ସ୍ୱଦୋଷ – ଦର୍ଶନ ପରିସ୍ଫୁଟ ହୋଇଥିଲାବେଳେ ଅପର ଦିଗରେ ତନ୍ତ୍ରୁଙ୍ଗି ଶକ୍ତି ନେଇ ମୁଣ୍ଡି ଟେକିଛି ରାମପ୍ରେମ । ଏହାର ପ୍ରମାଣ ବା ଉଦାହରଣ ଅନାବଶ୍ୟକ । କାରଣ ସମଗ୍ର ସର୍ଗରେ ଯେଉଁଠାରେ ସୀତାଙ୍କର ଆବିର୍ଭାବ ହୋଇଛି ସେଠାରେ ତାଙ୍କର ମାନସପଟର ରାମ ପୃଷ୍ଠଭୂମି ଉପରେ ଅଙ୍କିତ ହୋଇଛି । ପତି ଦେବତାଙ୍କ ପ୍ରେମରେ ସେ ଏପରି ବିଭୋର ହୋଇପଡ଼ିଛନ୍ତି ଯେ, ଶୟନ, ସ୍ୱପନ, ଜାଗରଣ ବେଳେ ସେ ଅନୁଭବ କରିଛନ୍ତି ରାମଚନ୍ଦ୍ରଙ୍କର ନିବିଡ ସାନ୍ନିଧ୍ୟ । ସୀତାଙ୍କ ମନରେ ପରକ ପାଇଁ ହେଲେ ମଧ୍ୟ ରାମଚନ୍ଦ୍ରଙ୍କ ପ୍ରତି ରାଗ ବା ଅଭିମାନ ଆସିନାହିଁ; ବରଂ ତାଙ୍କ ମନ-ସରୋବରରେ ରାମ – ରାଜହଂସ ହିଁ ବିହାର କରିଛି ତା'ର ଚିରନ୍ତନର ସ୍ୱାଭାବିକ ପ୍ରତିଷ୍ଠାରେ ଅପ୍ରତିହତ ଭାବେ । ଏହି ପ୍ରେମ ହିଁ ଥିଲା ତାପସୀ ସୀତାଙ୍କର ଧ୍ୟେୟ । ତାହାହିଁ ତାଙ୍କର ତପସ୍ୟା ।

ନବମ ସର୍ଗରେ ଯେତେବେଳେ ସତୀ ସୀତା ତାପସୀ ଜୀବନ ଅବଲମ୍ବନ ସମୟରେ ଦୁଃଖିତା ହୋଇଯାଇଛନ୍ତି ସେତେବେଳେ କେତକୀ ପୁଷ୍ପ ମଧ୍ୟ ତାଙ୍କୁ ପ୍ରେରଣା ଦେଇଛି

ତାପସୀ ଜୀବନଯାପନ କରିବାକୁ । ନିଜ ଗୁଣର ପରିପ୍ରକାଶ ମାଧ୍ୟମରେ ସମସ୍ତଙ୍କର ଆଦରଣୀୟା ହେବା ପାଇଁ ସେ ସୀତାଙ୍କୁ ଦୁଃଖ ବରଣ କରିବାକୁ କହିଛନ୍ତି । କବି ଏହି ପଂକ୍ତିରେ ଉଲ୍ଲେଖ କରିଛନ୍ତି :—

"ତାପସୀ ଗହଣେ ହୋଇ ତପସ୍ୱିନୀ,
ଲୋକ ପୂଜନୀୟା ହେବୁ ମନସ୍ୱିନୀ ।"

ବାଲ୍ମୀକି ଆଶ୍ରମରେ ତାପସୀମାନଙ୍କ ଗହଣରେ ରାମଗତ-ପ୍ରାଣା ସୀତା ଯେତେବେଳେ ଶୁଣିଛନ୍ତି ଯେ, ଅଯୋଧ୍ୟାର ଅଶ୍ୱମେଧ ଯଜ୍ଞର ବିପୁଳ ଉତ୍ସବରେ ମୁନି କୁମାର ତଥା ଲବ କୁଶଙ୍କ ସହିତ ମହର୍ଷି ବାଲ୍ମୀକି ସେଥିରେ ଯୋଗ ଦେବା ପାଇଁ ଉଦ୍ୟତ ସେତେବେଳେ ତାଙ୍କ ମନ ଭିତରେ ଉଙ୍କି ଆସିଛି ଏକ ସଂଶୟ ସଂକୁଳ ଦ୍ୱନ୍ଦ୍ୱ । ଅଶ୍ୱମେଧ ଯଜ୍ଞ କର୍ମରେ ସହଧର୍ମିଣୀର ଅନ୍ତଃର୍ଭୁକ୍ତତା ବିଧେୟ । ତେଣୁ ରାମଚନ୍ଦ୍ର ଯେ ଦ୍ୱିତୀୟ ପତ୍ନୀ ଗ୍ରହଣ କରିଛନ୍ତି ସେଥିରେ ସୀତା ନିଃସନ୍ଦେହୀନୀ ହୋଇଉଠିଛନ୍ତି । ସେଥିପାଇଁ କାରୁଣ୍ୟର ତୁଳିକା ଧରି ଅଶ୍ରୁର ଅଞ୍ଜନରେ ସେ ରାମଚନ୍ଦ୍ରଙ୍କ ନିକଟକୁ ଲେଖିଛନ୍ତି ଶୋକୋଚ୍ଛ୍ୱାସିତ ବ୍ୟାକୁଳ ବିରହ ପତ୍ର । ଦେବୀଗଣଙ୍କ ସହିତ କଳ୍ପନୀୟା ମାନସୀ ହେଲେହେଁ ସୀତା ଥିଲେ ସାଧାରଣ ରକ୍ତମାଂସ ତଥା ହୃଦୟ-ଧାରିଣୀ ନାରୀ ମାତ୍ର । ତେଣୁ ତାଙ୍କର ଈର୍ଷା ଜାତ ହେବା ସ୍ୱାଭାବିକ । କାରଣ ନିଜର ସ୍ୱାମୀ ପାର୍ଶ୍ୱରେ ଅନ୍ୟ କୌଣସି ନାରୀର ସାନ୍ନିଧ୍ୟ ବିବାହିତା ସ୍ତ୍ରୀ ସହ୍ୟ କରିପାରେ ନାହିଁ । ସୀତା ବା ଏଥିରୁ ବାଦ ଯାଇଥାନ୍ତେ କିପରି ! ହୁଏତ ସୀତାଙ୍କର ଏହି ମାନସିକ ପରିସ୍ଥିତିକୁ ଅନ୍ୟ କୌଣସି କାରଣ ଜନିତ ବ୍ୟଥା ବୋଲି ଅନେକେ ମତ ଦେଇ ପାରନ୍ତି । ମାତ୍ର ସୀତାଙ୍କ ମନରେ ଯେ ଗଭୀର ଈର୍ଷା ତଥା କ୍ଷୋଭ ଜାତ ହୋଇଥିଲା ସେକଥା କହିବା ବାହୁଲ୍ୟ ମାତ୍ର । ସେଥିପାଇଁ ସେ ଆକୁଳତାର ସହିତ ରାମଚନ୍ଦ୍ରଙ୍କ ପାଖକୁ ପତ୍ର ଲେଖିଛନ୍ତି :—

"ମୁଁ କିଏ ତା' ଜାଣିବାର ନୁହେଁ ଆବଶ୍ୟକ
ସଦା ତୁମେ ତାପସଙ୍କ ଅଶାନ୍ତ ନାଶକ
ତାପସଙ୍କୁ କିଛି ତୁମ ନ ଥାଏ ଅଦେୟ
ମୁହିଁ ତପସ୍ୱିନୀ ମୋତେ ନ କରିବ ହେୟ
ଯେ ହୋଇଛି ଆଜି ତୁମ ଅଙ୍କର ଭାଜନ
ଭକ୍ତିଭରେ ଦେଖୁଥିବେ ଜଗତର ଜନ
ପୂର୍ବେ ସେହି କରିଥିଲା କେଉଁ ଘୋର ତପ
କେଉଁଠାରେ କେତେ କାଳ କେଉଁ ମନ୍ତ୍ର ଜପ
ଏହା ମାତ୍ର ପ୍ରଭୋ, ତୁମ୍ଭେ ଦେବଟି ଜଣାଇ
ଅନ୍ୟ କିଛି ଧନେ ମୋର ପ୍ରୟୋଜନ ନାହିଁ ।"

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ରାମଚନ୍ଦ୍ରଙ୍କ ପ୍ରତି ସୀତାଙ୍କର କ୍ଷୋଭ ଜାତ ହୋଇଛି । ସେହିହେତୁ ସୀତାଙ୍କୁ ତପସ୍ୱିନୀ ଆଖ୍ୟା ଦିଆଯାଇ ନପାରେ । ମାତ୍ର ସେ ପରେ ଯେତେବେଳେ ନିଜ ସନ୍ତାନମାନଙ୍କ ଠାରୁ ଶ୍ରବଣ ହୋଇଛନ୍ତି ଯେ, ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞରେ ସୀତାଙ୍କ ସୁବର୍ଣ୍ଣ ପ୍ରତିମା ସ୍ଥାପନ କରିଛନ୍ତି, ସେତେବେଳେ ସେ ନିଜର ଭୁଲ ବୁଝିପାରି ଅନୁଶୋଚନା କରିଛନ୍ତି । ଅନୁତାପ ବା ଅନୁଶୋଚନା ହେଉଛି କୃତ ପାପର ପ୍ରାୟଶ୍ଚିତ । ତେଣୁ ସୀତାଙ୍କର ଦୋଷ ଅଛି ବୋଲି କୁହାଯାଇ ନପାରେ । ପ୍ରେମ ତପସ୍ୟାର ଆଦର୍ଶ ସୀତାଙ୍କ ତାପସୀ ଜୀବନର ଆଦର୍ଶକୁ ଭାଙ୍ଗି ପାରିନାହିଁ ।

ସ୍ୱାର୍ଥତ୍ୟାଗ ହେଉଛି ତାପସୀ ଜୀବନର ଆଉ ଏକ ବିଶେଷ ଗୁଣ । ସତୀ ସାଧ୍ୱୀ ସୀତାଙ୍କ ଜୀବନରେ ତାହାର ଅଭାବ ପରିଲକ୍ଷିତ ହୁଏ ନାହିଁ । ନିଜ ସ୍ୱାମୀ ଦ୍ୱିତୀୟ ଦାର ଗ୍ରହଣ କରିଥିବାର ଆଶଙ୍କାରେ ସେ ଆତଙ୍କିତ ହୋଇଉଠିଥିଲେ ମଧ୍ୟ ସ୍ୱାମୀଙ୍କୁ ସୁଖୀ କରିବା ପାଇଁ ସ୍ୱାର୍ଥତ୍ୟାଗ ରୂପକ ନିଦର୍ଶନର ଚରମ ପରାକାଷ୍ଠା ଦର୍ଶାଇ ସେ ତାଙ୍କର ତପସ୍ୱିନୀ ଜୀବନକୁ ଆହୁରି ଦୃଢ଼ ପ୍ରମାଣିତ କରିପାରିଛନ୍ତି । ସେ ପତ୍ର ଲେଖିଲା ବେଳେ କହିଛନ୍ତି :—

"ବୈଦେହୀର ପ୍ରଣୟକୁ ମଣିବ ସ୍ୱପନ
ଗୃହିଁ ନବ-ପ୍ରଣୟିନୀ-ପ୍ରଫୁଲ୍ଲ ବଦନ"

ବାସ୍ତବିକ୍ କି ସ୍ୱାର୍ଥତ୍ୟାଗ ! ସାମାନ୍ୟ ନାରୀ ହେଲେ ମଧ୍ୟ ସୀତାଙ୍କ ଏ ତ୍ୟାଗର ପଟାନ୍ତର ନାହିଁ ।

ଏକାଦଶ ସର୍ଗର ଶେଷଆଡ଼କୁ ଦୃଷ୍ଟିଗୋଚର ହୁଏ ଯେ, ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞଠାରୁ ଆରମ୍ଭ କରି ଜୀବନର ଅବଶିଷ୍ଟ ସମୟ ସୀତା ସେହି ତାପସୀ ବ୍ରତ ଅବଲମ୍ବନ କରିବା ପାଇଁ ଦୃଢ଼ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ତେଣୁ ଲବକୁଶ ଯେତେବେଳେ ବାଲ୍ମୀକିଙ୍କ ସହିତ ଅଶ୍ୱମେଧ ଯଜ୍ଞ ଦର୍ଶନାଭିମୁଖୀ ହୋଇଛନ୍ତି ସେତେବେଳେ ସେ ନିଜର ସନ୍ତାନମାନଙ୍କୁ ଉପଦେଶ ଦେଇଛନ୍ତି, ଅଯୋଧ୍ୟାରେ ତାଙ୍କୁ କେହି ପଚାରିଲେ ସେ ତାଙ୍କର ପରିଚୟ "ତାପସୀଙ୍କ ଧନ" ବୋଲି କହିବାକୁ । କବି ଏଠାରେ ଏହି ପରିବେଶର ଏକ ମନୋଜ୍ଞ ତଥା ସୁରୁଚିପୂର୍ଣ୍ଣ ଉଦାହରଣ ଦର୍ଶାଇବାକୁ ଯାଇ କହିଛନ୍ତି :—

"ପଚାରିବେ କେହି ଯେବେ କାହାର ନନ୍ଦନ,
ଉତ୍ତର ବୋଲିବ ଆମ୍ଭେ ତପସ୍ୱିନୀ ଧନ"

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଅବଶିଷ୍ଟ ଜୀବନ ମଧ୍ୟ ତପସ୍ୱିନୀ ଭାବେ କଟାଇ ଦେବା ପାଇଁ ସୀତା ସ୍ଥିର କରିଛନ୍ତି ।

ତପସ୍ୱିନୀ କାବ୍ୟର ପରିସମାପ୍ତି ଘଟିଛି ଯେତେବେଳେ ରାମ-ସୀତାଙ୍କ ମିଳନରେ ସାରା ସଂସାର ପୂରିଉଠିଛି । କବି ଗଙ୍ଗାଧରଙ୍କ ଲେଖନୀ ମଧ୍ୟ ସେଥିରେ ବ୍ୟତିକ୍ରମ ସୃଷ୍ଟି କରିନାହିଁ । କାବ୍ୟର ପରିସମାପ୍ତି ଘଟାଇବାକୁ ଯାଇ ସେ କହିଛନ୍ତି :—

"ଉଲ୍ଲସିତ ହୋଇଅଛି ଜଗତ ସଂସାର,
ବୃଦ୍ଧି ମୁଗ୍ଧ ହେଲେ ସତୀ-ଲଳନା-ଲଲାମ ।"

ବାସ୍ତବିକ୍ କବି ମେହେରଙ୍କ ତପସ୍ୱିନୀ କାବ୍ୟର ନାମକରଣ ସାର୍ଥକତା ଲାଭ କରିଛି । ନିର୍ବାସିତା, ସ୍ୱାମୀ ସୁଖରୁ ବଞ୍ଚିତା ହେଲେ ମଧ୍ୟ ସତୀ ସାଧ୍ୱୀ ସୀତା କେଉଁଠାରେ ହେଲେ ନିଜ ସ୍ୱାମୀଙ୍କର ଦୋଷ ଦର୍ଶାଇନାହାନ୍ତି । ଭାଗ୍ୟବାଦିନୀ ହିସାବରେ କେଉଁଠାରେ ସେ ହୁଏତ ଭାଗ୍ୟକୁ ଦୋଷ ଦେଇଛନ୍ତି ; କେଉଁଠି ବା ନିଜ କୃତକର୍ମର ଫଳ ବୋଲି ଆଖ୍ୟାୟିତ କରିଛନ୍ତି । ଆଉ କେଉଁଠି ହୁଏତ ନିଜକୁ "ପାପିନୀ" ବୋଲି ଅଭିହିତ କରିଛନ୍ତି । ମାତ୍ର ସମୁଦାୟ କାବ୍ୟରେ ତାଙ୍କ ମୁଖରେ ରାମଚନ୍ଦ୍ରଙ୍କ ଦୋଷ କେଉଁଠାରେ ହେଲେ ଉଚ୍ଚାରିତ ହୋଇନାହିଁ । ତାଙ୍କ ସମ୍ମୁଖରେ ରାମଚନ୍ଦ୍ର ସବୁବେଳେ "ପତି ପରମ ଦେବତା" ରୂପେ ପ୍ରତୀୟମାନ ହୋଇଉଠିଛନ୍ତି । ନିର୍ବାସିତା ହେଲେହେଁ ସମୁଦାୟ ଜୀବନ ସେ ଅତିବାହିତ କରିଛନ୍ତି ସ୍ୱାମୀଙ୍କ ଗୁଣଗାନରେ— ଏହାହିଁ ହିନ୍ଦୁ ରମଣୀର ପ୍ରଥମ କର୍ତ୍ତବ୍ୟ । ନିଜ ସ୍ୱାମୀ ଯେତେ ଦୁଷ୍ଟଚରିତ, ନିଷ୍ଠୁର, ଅନ୍ୟାୟୀ ହେଲେହେଁ ସ୍ତ୍ରୀ ମୁଖରେ ତାହାର ନିନ୍ଦାଗାନ ହେଉଛି ହିନ୍ଦୁ ସମାଜ ତଥା ଧର୍ମର ବିରୋଧୀ । ସୀତା ଉକ୍ତ ସତ୍ୟବାଣୀ ବା ଧର୍ମବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି ।

ତପସ୍ୱିନୀ ସୀତା ନିଜ ହୃଦୟରେ ଯେଉଁ ପ୍ରିୟର ନିରାଜନା କରିବା ପାଇଁ ତପସ୍ୟା ନିରତ ଥିଲେ ତାହା ଥିଲା ତାଙ୍କ ପକ୍ଷରେ ଏକ ଅନିର୍ବଚନୀୟ ଦୁର୍ଲ୍ଲଭ ବସ୍ତୁ । ଆଦର୍ଶ ପୁରୁଷର ଉପଯୁକ୍ତା ସ୍ତ୍ରୀ ହିସାବରେ ସେ ନିଜର କର୍ତ୍ତବ୍ୟ ସମ୍ପାଦନ କରି ଯାଇଛନ୍ତି । ପାତିବ୍ରତ୍ୟର ଚରମ ପରାକାଷ୍ଠା ପ୍ରଦର୍ଶନ ରୂପକ ସେ ହେଉଛନ୍ତି ସମସ୍ତ ହିନ୍ଦୁ ସମାଜର ବନ୍ଦନୀୟା ।

ପ୍ରକୃତ କବି ଗଙ୍ଗାଧରଙ୍କ "ତପସ୍ୱିନୀ" କାବ୍ୟର ନାମକରଣରେ ସାର୍ଥକତା ଯାଥାର୍ଥ୍ୟ ବୋଲି ଏଥିରୁ ପ୍ରତିପାଦିତ ହୁଏ ।

# ନେହେରୁଙ୍କ ଦାର୍ଶନିକ ଦୃଷ୍ଟିକୋଣ

। ଶ୍ରୀ କିଶୋର ସ୍ୱାଇଁ ।
ତୃତୀୟ ବାର୍ଷିକ ଉପାଧି

ଭାରତର ଜାତୀୟ ମୁକ୍ତି ଆନ୍ଦୋଳନର ଜନୈକ ଅଗ୍ରଣୀ ନେତା ଓ ମହାତ୍ମାଗାନ୍ଧୀଙ୍କର ପଟ୍ଟଶିଷ୍ୟ ଜବାହାରଲାଲ ନେହେରୁଙ୍କ ଜୀବନ ୫୦ ବର୍ଷ ଧରି ମହାନ୍ ଭାରତୀୟ ଜନଗଣଙ୍କ ସଂଗ୍ରାମ ଓ ଜୀବନ ସହିତ ନିବିଡ଼ ଭାବେ ସମ୍ପୃକ୍ତ ହୋଇ ରହି-ଥିଲା । ଜବାହରଲାଲ ନେହେରୁ କେବଳ ଜଣେ ରାଷ୍ଟ୍ରନାୟକ ବା ରାଜନୈତିକ ନେତା ରୂପେ ବିଦିତ ନ ଥିଲେ, ସେ ଜଣେ ମୌଳିକ ଚିନ୍ତାନାୟକ, ଗଭୀର ଚିନ୍ତାଶୀଳ ବ୍ୟକ୍ତି ବୋଲି ମଧ୍ୟ ବିଦିତ ଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ଭାରତର ଜନସାଧାରଣ-ଙ୍କର ଚିନ୍ତାକୁ ବହୁଧା ପ୍ରଭାବିତ କରିଥିଲା ଏବଂ ଭାରତୀୟ କଂଗ୍ରେସର ଭାବାଦର୍ଶଗତ ଚରିତ୍ର ମଧ୍ୟ ତାଙ୍କ ଦୃଷ୍ଟିଭଙ୍ଗୀ ଦ୍ୱାରା କେତେକାଂଶରେ ନିର୍ଦ୍ଧାରିତ ହୋଇଥିଲା ।

ନେହେରୁଙ୍କ ବିଶ୍ୱ ଦୃଷ୍ଟିଭଙ୍ଗୀ ଏକ ମିଶ୍ର ବିବର୍ତ୍ତନ ଭିତର ଦେଇ ଗତି କରିଥିଲା ଏବଂ ପ୍ରଭାବିତ ହୋଇଥିଲା ନାନାବିଧ ସାମାଜିକ - ରାଜନୈତିକ ତଥା ଭାବାଦର୍ଶଗତ ଉପାଦାନ ଦ୍ୱାରା ।

ନେହେରୁଙ୍କ ଦୃଷ୍ଟିକୋଣ ପାଶ୍ଚାତ୍ୟ ଜଗତର, ବିଶେଷ କରି ସେ ଯେଉଁ ବ୍ରିଟେନ୍‌ରେ ମାଧ୍ୟମିକ ଓ ଉଚ୍ଚଶିକ୍ଷା ଲାଭ କରିଥିଲେ ସେହି ଦେଶର ଗଣତାନ୍ତ୍ରିକ ଭାବଧାରାର ନିଷ୍ପତ୍ତି ମୂଳକ ପ୍ରଭାବ ଅଧୀନରେ ବିକାଶ ଲାଭ କରିଥିଲା । ସେ ଭାରତବର୍ଷକୁ ଫେରିବା ପରେ ପରେ ଏହି ଦୃଷ୍ଟିକୋଣରେ ପରିଚୟ ମିଳିଥିଲା । କିନ୍ତୁ ନେହେରୁଙ୍କର ରାଜନୈତିକ କାର୍ଯ୍ୟ-କଳାପ ବୃଦ୍ଧି ପାଇବା ସଂଗେ ସଂଗେ ତାଙ୍କର ମନ ସ୍ୱଦେଶର ମର୍ମବାଣୀରେ, ଜାତୀୟ ଭାବାଦର୍ଶଗତ ପରମ୍ପରା ଦ୍ୱାରା ପ୍ରଭାବିତ ହୋଇଥିଲା । ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏ ନିର-ବଚ୍ଛିନ୍ନ ଗସ୍ତ ଓ କୋଟି କୋଟି କୃଷକ ଜନତା ସହିତ ଘନିଷ୍ଠ ସଂସ୍ପର୍ଶ ତାଙ୍କର ପୂର୍ବର ଧାରଣା ଗୁଡ଼ିକୁ ନିଷ୍ପତ୍ତିମୂଳକ ଭାବେ ପରିବର୍ତ୍ତନ କରିଦେଇଥିଲା । ସେ ନିଜେ ଲେଖିଥିଲେ — "ମୁଁ କୃଷକ ଆନ୍ଦୋଳନରେ ନିମଜ୍ଜିତ ହୋଇଯାଇଥିଲି, ସେ ନିମଜ୍ଜନ ପରବର୍ତ୍ତୀ ବର୍ଷମାନଙ୍କରେ ବୃଦ୍ଧି ପାଇଥିଲା ଏବଂ ମୋର ମାନସିକ

ଦୃଷ୍ଟିଭଙ୍ଗୀକୁ ବହୁଧା ପ୍ରଭାବିତ କରିଥିଲା ··· ··· ··· ଏବଂ ସେହିଦିନଠାରୁ ମୋର ମାନସପଟରେ ଅଙ୍କିତ ହୋଇଥିବା ଭାରତର ଚିତ୍ରରେ ଏହି ନଗ୍ନ କ୍ଷୁଧାର୍ତ୍ତ ଜନତାର ଛବି ବରାବର ରହିଆସିଛି ।

( ଜବାହାରଲାଲ ନେହେରୁ, ଆତ୍ମଜୀବନୀ, ଲଣ୍ଡନ, ପୃଷ୍ଠା ୫୧-୫୭ )

ନେହେରୁ ଥିଲେ ମହାତ୍ମାଗାନ୍ଧୀଙ୍କର ଏକାନ୍ତ ଗୁଣମୁଗ୍ଧ । ସେ ଗାନ୍ଧୀଙ୍କୁ ଭାରତୀୟ ଜାତୀୟ-ମୁକ୍ତି ଆନ୍ଦୋଳନର କର୍ଣ୍ଣଧାର ଓ ସାମ୍ରାଜ୍ୟବାଦ ବିରୋଧୀ ରୂପେ ସମ୍ମାନ କରୁଥିଲେ । କିନ୍ତୁ ଅନ୍ୟ କେତେକ କଥା ମଧ୍ୟରେ ସେ ଗାନ୍ଧୀଙ୍କର ରାଜନୀତି ପ୍ରତି ଧର୍ମପରାୟଣ ଦୃଷ୍ଟିଭଙ୍ଗୀ, ପୁରାତନ ଯୁଗ ପ୍ରତି ଆସକ୍ତି, କୃଚ୍ଛ୍ର ସାଧନା ଓ ଦୁଃଖ ଦାରିଦ୍ର୍ୟ ସପକ୍ଷରେ ସଫେଇ— ଏହି କଥାଗୁଡ଼ିକୁ ଗ୍ରହଣ କରିପାରି ନ ଥିଲେ । ଅହିଂସା ଧାରଣାଟି ସମ୍ପର୍କରେ ସେ ବିଶେଷ ଯୁକ୍ତିଯୁକ୍ତ ସମାଲୋଚନାମାନ ଉପସ୍ଥାପିତ କରିଥିଲେ । ସନ୍ଦେହାତୀତ, ତର୍କାତୀତ ଏକମାତ୍ର ମତବାଦରେ ପରିଣତ କରିବା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରୁଥିଲେ । ସେ ଉଲ୍ଲେଖ କରିଥିଲେ ଯେ, ଅହିଂସା ଧାରଣାଟି ଅପରିବର୍ତ୍ତନୀୟ ମତବାକ୍ୟରେ ପରିଣତ ହୋଇଯିବା ଦ୍ୱାରା "ବୁଦ୍ଧି ବୃତ୍ତି ପାଖରେ ଏହାର ଆତ୍ମିକ ଆବେଦନ ରହୁନାହିଁ, ଏହା ସେହି ଈଶ୍ୱର ଓ ଧର୍ମବିଶ୍ୱାସ ପାଇଁ ସୁରକ୍ଷିତ ସଂକୀର୍ଣ୍ଣ ଆଶ୍ରୟସ୍ଥଳୀକୁ ଚାଲିଯାଉଛି । ଏହା ନ୍ୟସ୍ତସ୍ୱାର୍ଥମାନଙ୍କର ଏକ ନିରାପଦ କାଳୀନ ଢାଲରେ ମଧ୍ୟ ପରିଣତ ହେଉଛି, ଯେଉଁ ନ୍ୟସ୍ତସ୍ୱାର୍ଥମାନେ କି ସ୍ଥିତାବସ୍ଥା ବଜାୟ ରଖିବା ପାଇଁ ଏହାକୁ ବ୍ୟବହାର କରୁଛନ୍ତି ।"

ନେହେରୁ ପେଶାଦାର ଦାର୍ଶନିକ ନ ଥିଲେ କି ସୁସମ୍ବଦ୍ଧ ତର୍କସିଦ୍ଧ ଦାର୍ଶନିକ ପଦ୍ଧତି ସୃଷ୍ଟି କରି ନ ଥିଲେ । ସେ କିନ୍ତୁ ସାମାଜିକ-ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ଗୁଡ଼ିକର ନିରାକରଣ ପାଇଁ ଏକ ପ୍ରକୃଷ୍ଟ ଦୃଷ୍ଟିଭଙ୍ଗୀ ବାହାର କରିବା ଦିଗରେ ତାତ୍ତ୍ୱିକ ଓ ଦାର୍ଶନିକ ଚିନ୍ତାର ଗୁରୁତ୍ୱ କେତେ ତାହା ସ୍ପଷ୍ଟତଃ ଉପଲବ୍ଧି କରିଥିଲେ । ଏକ ଗତିଶୀଳ ସକ୍ରିୟ ଦୃଷ୍ଟିଭଙ୍ଗୀ, ଜୀବନର ଏକ ଦର୍ଶନ ଗଢି ତୋଳିବାର ପ୍ରୟୋଜନୀୟତା ଉପରେ ସେ ଜୋର ଦେଇଥିଲେ, ଯାହାକି ଫଳପ୍ରଦ କର୍ମତତ୍ପରତା ଲାଗି ଉପଯୁକ୍ତ ମାର୍ଗର ନିର୍ଦ୍ଦେଶ ଦେଇପାରିବ ।

ଦର୍ଶନ ପ୍ରତି ଏତାଦୃଶ ମନୋଭାବରୁ ବିଜ୍ଞାନ ଓ ଯୁକ୍ତିବାଦ ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି ହେଲା — ଏହି ମନୋଭାବହିଁ ତାଙ୍କର କୁସଂସ୍କାର, ମାୟାବାଦ ଓ ଧର୍ମ ପ୍ରତି ଘୃଣା ଏବଂ ବେଳେ ବେଳେ ଦେଖାଯାଉଥିବା ବୈରଭାବର କାରଣ ହେଉଥିଲା । ଆଧ୍ୟାତ୍ମବାଦକୁ ସେ ହାସ୍ୟକର ଏବଂ ଅବାନ୍ତର କଥାଟିଏ ବୋଲି ଅଭିହିତ କରିଥିଲେ, ଦୈବୀ ଶକ୍ତି ପ୍ରତି ବିଶ୍ୱାସକୁ ସେ ଖାରଜ କରିଦେଇଥିଲେ, ଯେତେସବୁ ଧର୍ମପୁରାଣ ଉପାଖ୍ୟାନ ତାକୁ ସେ ଉପହାସ କରୁଥିଲେ ।

ଧର୍ମ ସମ୍ପର୍କରେ ନେହେରୁଙ୍କ ମନୋଭାବ ବିଶେଷ ପ୍ରଣିଧାନଯୋଗ୍ୟ । ସେ ଜଣେ ଅଭିଜ୍ଞ ଓ ଦୂରଦର୍ଶୀ ରାଜନୀତିଜ୍ଞ ହୋଇଥିବାରୁ ହୃଦୟଙ୍ଗମ କରିଥିଲେ ଯେ ଯଦି ଧର୍ମକୁ ଜାତୀୟ ମୁକ୍ତି ଆନ୍ଦୋଳନର ନିଷ୍ପତ୍ତିମୂଳକ ଭାବାଦର୍ଶଗତ ଭିତ୍ତି କରିଦିଆଯାଏ ତାହା-ହେଲେ ଆନ୍ଦୋଳନର ଅଂଶଗ୍ରହଣକାରୀମାନଙ୍କୁ ଏହା ସାମାଜିକ-ଅର୍ଥନୈତିକ ସମସ୍ୟା ପ୍ରତି ବିମୁଖ କରିଦେବ । ସେ ବିବେଚନା କରୁଥିଲେ ଯେ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମର ପ୍ରଧାନ ଆଧେୟ ଓ ମୁଖ୍ୟ ଲକ୍ଷ୍ୟ ହେଉଛି ଏହି ସାମାଜିକ-ଅର୍ଥନୈତିକ ସମସ୍ୟା ଗୁଡ଼ିକର ସମାଧାନ । ଏହି କାରଣରୁ ସେ ରାଜନୀତି ଓ ଧର୍ମକୁ ସଂଯୁକ୍ତ କରି-ବାର ବଳବତ୍ତର ପ୍ରବଣତା ବିରୁଦ୍ଧରେ ଏବଂ ଧର୍ମକୁ ରାଜନୈତିକ ସଂଗ୍ରାମର ଏକ ମୁଖ୍ୟ ଆଚରଣ ବିଧିର ପର୍ଯ୍ୟାୟକୁ ଉନ୍ନୀତ କରିବାର ଅଭିପ୍ରାୟ ବିରୁଦ୍ଧରେ ସ୍ୱର ଉଠାଇଥିଲେ ।

ଅଧିକନ୍ତୁ, ନେହେରୁ ଅନେକ ସମୟରେ ଧର୍ମକୁ କଠୋର ସମାଲୋଚନା କରୁଥିଲେ, କାରଣ ଏହା ଗୋଟିଏ ରକ୍ଷଣଶୀଳ, ପ୍ରତିକ୍ରିୟାଶୀଳ ଶକ୍ତି ବୋଲି ସ୍ୱୀକାର କରୁଥିଲେ । "ଧର୍ମ ବୋଲି ଯାହାକୁ କୁହାଯାଉଛି ତା'ର ଚିହ୍ନ ବା ଯେ କୌଣସି ପ୍ରକାରର ସଂଗଠିତ ଧର୍ମର ଚିହ୍ନ, ସେ ଭାରତବର୍ଷରେ ହେଉ ବା ଅନ୍ୟ କୌଣସି ଠାରେ ହେଉ, ମୋତେ ସର୍ବଦା ବିଭୀଷିକାମୟ ଦେଖାଯାଉଛି । ମୁଁ ବରାବର ତା'ର ନିନ୍ଦା କରିଆସିଛି ଏବଂ ତା'ର କୌଣସି ଚିହ୍ନ ବର୍ତ୍ତି ନ ରଖି ନିର୍ମୂଳ କରିଦେବାକୁ ଇଚ୍ଛା କରିଆସିଛି । ପ୍ରାୟ ସର୍ବଦା ଏ ଧର୍ମ-ଅନ୍ଧବିଶ୍ୱାସ ଓ ପ୍ରତିକ୍ରିୟା, ଅନ୍ଧ ମତବାଦ ଓ ଅନ୍ଧାନୁସରଣ, କୁସଂସ୍କାର ଓ ଶୋଷଣ ଏବଂ ନ୍ୟସ୍ତସ୍ୱାର୍ଥର ସୁରକ୍ଷା ସପକ୍ଷରେ ହିଁ ପ୍ରଚାର କରି ଆସିଥିବା ଭଳି ମନେହୋଇଛି ·· ······ ଧର୍ମ ବିଶ୍ୱାସଗତ ଦୃଷ୍ଟିଭଙ୍ଗୀ କେବେହେଲେ ସାହାଯ୍ୟ କରିନାହିଁ, ବରଂ ଏହା ଏକ ଜାତିର ନୈତିକ ତଥା ଆତ୍ମିକ ପ୍ରଗତିକୁ ବ୍ୟାହତ କରେ ······ ସଙ୍ଗଠିତ ଧର୍ମ ଓ ସଚରାଚର ଏକ ନ୍ୟସ୍ତସ୍ୱାର୍ଥରେ ପରିଣତ ହୁଏ, ଫଳରେ ଏହା ପରିବର୍ତ୍ତନ ଓ ପ୍ରଗତିକୁ ବିରୋଧ କରୁଥିବା ଏକ ପ୍ରତିକ୍ରିୟାଶୀଳ ଶକ୍ତି ହେବା ଅବଶ୍ୟମ୍ଭାବୀ ।"

( ଜବାହରଲାଲ ନେହେରୁ, ଆତ୍ମଜୀବନୀ, ପୃଷ୍ଠା- ୩୭୪-୩୭୭ )

ଜ୍ଞେୟ ବସ୍ତୁ ଅର୍ଥାତ୍ ଦୃଶ୍ୟମାନ ଆବେଷ୍ଟନୀ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ, ନେହେରୁଙ୍କର ଏହି ବିଷୟରେ ଦାର୍ଶନିକ ଅସ୍ତିତ୍ୱ ସମ୍ପର୍କରେ କୌଣସି ସୁସ୍ପଷ୍ଟ ଯୁକ୍ତିଯୁକ୍ତ ଦୃଷ୍ଟିକୋଣ ନ ଥିଲା । ସେ ମତ ଦେଉଥିଲେ ଯେ, ଜୀବନ ଓ ବାସ୍ତବତା ଯେହେତୁ ଅତୀବ ମିଶ୍ର ପ୍ରକୃତିର ଅଟନ୍ତି, ସେମାନଙ୍କୁ କୌଣସି ତତ୍ତ୍ୱର ତର୍କସିଦ୍ଧ ଚୌହଦୀ ମଧ୍ୟରେ ସୀମିତ କରାଯାଇ ପାରିବ ନାହିଁ । ତାଙ୍କର ଏହି ମତ ସତ୍ତ୍ୱେ ସେ ଏଭଳି ଅନେକ ଗମ୍ଭୀର ଓ ମୌଳିକ ଧାରାଣାର ପ୍ରବର୍ତ୍ତନ କରିଥିଲେ, ସେଗୁଡ଼ିକ ସେତେବେଳେ ଆଦୃତ ହେଉଥିବା ପାରମ୍ପରିକ ଧାରଣାର ସୀମା ଅତିକ୍ରମ କରି ବହୁଦୂର ବ୍ୟାପ୍ତ ହୋଇଥିଲା ।

ସତ୍ତାର ସ୍ୱରୂପ ସମ୍ପର୍କରେ ନେହେରୁଙ୍କ ଦୃଷ୍ଟିଭଙ୍ଗୀ ସବୁବେଳେ ବସ୍ତୁବାଦୀ ଥିଲା ବୋଲି କହିହେବ ନାହିଁ । କାରଣ ବସ୍ତୁର ଅସ୍ତିତ୍ୱକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସେ ଆତ୍ମାର ସ୍ୱାଧୀନ ଅସ୍ତିତ୍ୱକୁ ବିଶ୍ୱାସ କରୁଥିଲେ । ଯଦିଓ ସେ ଧର୍ମକୁ, ଅନ୍ଧବିଶ୍ୱାସକୁ ଓ କୁସଂସ୍କାରକୁ ସମାଲୋଚନା କରୁଥିଲେ ଏବଂ ଆଧିଦୈବିକ ଶକ୍ତି ଉପରେ ବିଶ୍ୱାସକୁ ନାକଚ କରିଦେଇଥିଲେ, ତଥାପି ଆଦର୍ଶବାଦୀ ଦୃଷ୍ଟିକୋଣ ପ୍ରତି ତାଙ୍କର ଅନୁରକ୍ତି ରହିଥିଲା । ବସ୍ତୁ ମଧ୍ୟରେ ନିହିତ ହୋଇଥାଏ ବା ସ୍ୱାଧୀନ ସତ୍ତା ଧାରଣ କରିଥାଏ କିଛି ଗୋଟିଏ ସୃଷ୍ଟିକାରୀ ଆଧ୍ୟାତ୍ମିକ ଶକ୍ତି ରହିଛି ବୋଲି ସେ ବିଶ୍ୱାସ କରୁଥିଲେ । ଯେ ପ୍ରକୋଶ୍ୟରେ ବ୍ୟକ୍ତ କରିଛନ୍ତି ଯେ, "ଆତ୍ମାର କେତେକ କଥା ଆମ ଶରୀରର ଜଡ଼ତର ପରିସର ବାହାରେ ରହିଛି ବୋଲି କିଛି ପରିମାଣରେ ବିଶ୍ୱାସ କରିବା ପ୍ରୟୋଜନ ମନେହୁଏ । ନୈତିକ, ଆଧ୍ୟାତ୍ମିକ ଏବଂ ଆଦର୍ଶବାଦୀ ଅବଧାରଣା ଉପରେ କିଛି ପରିମାଣରେ ନିର୍ଭର କରିବା ମଧ୍ୟ ପ୍ରୟୋଜନ, ତାହା ନ ହେଲେ ଆମର କୌଣସି ସାହା ଭରସା ସ୍ଥଳ ରହିବ ନାହିଁ କି ଜୀବନରେ କୌଣସି ଲକ୍ଷ୍ୟ ବା ଉଦ୍ଦେଶ୍ୟ ବୋଲି କିଛି ରହିବ ନାହିଁ । ଆମେ ଭଗବତ୍ ସତ୍ତା ଉପରେ ବିଶ୍ୱାସ କରୁ ବା ନ କରୁ, କିଛି ଗୋଟିଏ ରହିଛି ବୋଲି ବିଶ୍ୱାସ ନ କରିବା ଅସମ୍ଭବ— ଆମେ ତାକୁ ସୃଷ୍ଟିକାରୀ ଜୀବନଦାୟୀ ଶକ୍ତି ବୋଲି ଅଭିହିତ କରିପାରୁ ବା ବସ୍ତୁର ଅନ୍ତନିହିତ ସଞ୍ଜୀବନୀ ଶକ୍ତି ବୋଲି ଅଭିହିତ କରିପାରୁ ··· ··· ···ଆମକୁ କିଛି ଗୋଟାଏ ବିଶ୍ୱାସ କରିବାକୁ ହେବ, ଯାହାକି ଦୁର୍ବୋଧ୍ୟ ହେଲେ ମଧ୍ୟ ମୃତ୍ୟୁ ପାଖରେ ଜୀବନ ଯେଉଁଭଳି ବାସ୍ତବ ଅଟେ ସେହିଭଳି ବାସ୍ତବ ।"

( ଜବାହରଲାଲ ନେହେରୁ, ଭାରତ ଆବିଷ୍କାର, ପୃ ୫୨୪ )

ଜଣେ ଦୃଢ଼ ପ୍ରତ୍ୟୟ ମାନବବାଦୀ ଏବଂ ଔପନିବେଶିକ ଓ ସାମାଜିକ ନିର୍ଯ୍ୟାତନର ଅପୋଷହୀନ ବୈରୀ ନେହେରୁଙ୍କ ଦୃଷ୍ଟିଭଂଗୀର ଯୌକ୍ତିକ ବିକାଶ ତାଙ୍କୁ ଆମ ଯୁଗର ସର୍ବାଗ୍ରଗଣ୍ୟ ଚିନ୍ତାଧାରା ଅର୍ଥାତ୍ ସମାଜବାଦୀ ଚିନ୍ତାଧାରା ପାଖରେ ଆଣି ଉପନୀତ କରାଇଥିଲା । ତାଙ୍କର ରାଜନୈତିକ କାର୍ଯ୍ୟକଳାପ ତାତ୍ତ୍ୱିକ ଭାବେ ନିବେଶିତ ହୋଇଥିଲା ସଞ୍ଚିତ ଯୁକ୍ତିବାଦ ଓ ଐତିହାସିକ ଆଶାବାଦ ଉପରେ ଓ ଦେଶବାସୀଙ୍କ ସୃଜନଶୀଳ କ୍ଷମତା ଉପରେ ଓ ସମାଜବାଦୀ ଆଦର୍ଶରେ ଭାରତୀୟ ସମାଜକୁ ନିର୍ମାଣ କରିବାର ପ୍ରୟୋଜନୀୟତା ଉପରେ ।

ଏହି ମହତ୍ୱପୂର୍ଣ୍ଣ ଦୁର୍ଲ୍ଲଭ କର୍ତ୍ତବ୍ୟ ଗୁଡ଼ିକର ସଂପାଦନ କଲେ ତାଙ୍କର ସମଗ୍ର ଜୀବନ ଉତ୍ସୃଷ୍ଟ ହୋଇଥିଲା । ସେହି କାରଣରୁ ଭାରତୀୟ ଜନଗଣଙ୍କର ମହାନ୍ ସନ୍ତାନ ଜବାହରଲାଲ ନେହେରୁ ଆଜି ବିଶ୍ୱବ୍ୟାପୀ ଶ୍ରଦ୍ଧା ଓ ସମ୍ମାନଲାଭ କରୁଛନ୍ତି—କେବଳ ଜଣେ ଅସାଧାରଣ ରାଷ୍ଟ୍ରନୀତିଜ୍ଞ ଓ ରାଜନୈତିକ ନେତା ଭାବେ ନୁହେଁ, ଜଣେ ମୌଳିକ ନିଗୂଢ଼ ଦାର୍ଶନିକ ଭାବରେ ମଧ୍ୟ ।

# ଚଣ୍ଡୀଦାସ ଓ ରାମୀ

ପ୍ରାୟ ତିନି ଶତାଧିକ ବର୍ଷ ପୂର୍ବେ ବଙ୍ଗ ଦେଶାନ୍ତର୍ଗତ ଏକ ପଲ୍ଲୀ ଗ୍ରାମରେ ଦୁର୍ଗାଦାସ ନାମକ ଜୈନୈକ ବ୍ରାହ୍ମଣଙ୍କ ଔରସରେ ଚଣ୍ଡିଦାସ ଜନ୍ମଗ୍ରହଣ କରିଥିଲେ ।

ଚଣ୍ଡିଦାସ ବାଲ୍ୟକାଳରୁ ପିତୃମାତୃ ଶୂନ୍ୟ ହୋଇଥିବାରୁ ତାଙ୍କ ଭାଗ୍ୟରେ ବିଦ୍ୟାଶିକ୍ଷାର ସୁଯୋଗ ଘଟି ନ ଥିଲା । ଗ୍ରାମ-ବାସୀ ବ୍ରାହ୍ମଣଗଣ ଦୟା ପରବଶ ହୋଇ ଉପଯୁକ୍ତ ସମୟରେ ତାଙ୍କର ଉପନୟନାଦି କ୍ରିୟା ସଂପାଦନ କରାଇଥିଲେ । ସେ ଯୌବନରେ ଉପନୀତ ହେବା ପରେ ଗ୍ରାମବାସୀମାନେ ତାହାଙ୍କୁ ଦେବୀ ବିଶାଳାକ୍ଷୀଙ୍କ ମନ୍ଦିରରେ ପୂଜକ ରୂପେ ନିଯୁକ୍ତ କଲେ । ଚଣ୍ଡିଦାସ ମନ୍ଦିର ସଂକ୍ରାନ୍ତ ସମସ୍ତ କାର୍ଯ୍ୟ ସୁଚାରୁ ରୂପେ ଚଳାଇ ସମସ୍ତଙ୍କ ପ୍ରୀତିପାତ୍ର ହେଲେ । ରାମମଣି ନାମରେ ଜଣେ ରଜକୀ ଯୁବତୀ ସେହି ମନ୍ଦିରରେ ଦାସୀ କାମ କରୁଥିଲା । ସେହି ଯୁବତୀର ନିଷ୍କାପଟ ଭକ୍ତି ଓ ନିର୍ମଳ ଚରିତ୍ରରେ ଆକୃଷ୍ଟ ହୋଇ ଚଣ୍ଡିଦାସ ତାହାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ତାନ୍ତ୍ରିକ ଉପାସନାର ପ୍ରବଳତା ଯୋଗୁଁ ସେ ସମୟରେ ଭାରତବର୍ଷରେ ବୈଷ୍ଣବ ଧର୍ମ ସେତେ ଖ୍ୟାତିଲାଭ କରି ନ ଥିଲା । ତଥାପି ବୈଷ୍ଣବଗଣଙ୍କ ସଂସ୍ରବରେ ରହି ଚଣ୍ଡିଦାସଙ୍କ ମନ ରାଧାକୃଷ୍ଣଙ୍କ ପ୍ରତି ଧାବିତ ହେଉଥିଲା । ଦିନକର ସେ ଦେବୀ ବିଶାଳାକ୍ଷୀଙ୍କ ମଧ୍ୟରେ କୃଷ୍ଣରୂପ ଦର୍ଶନ କଲେ । ତାହାଙ୍କ ଭେଦଭାବ ଦୂର ହୋଇଗଲା — କାଳୀ-କୃଷ୍ଣ ଏକ ଦେଖାଗଲେ ।

ଏହି ଘଟଣାର କିଛିଦିନ ପରେ ଦିନେ ଗାଢ଼ ରଜନୀରେ କୌଣସି ପ୍ରେତାତ୍ମା ବିଶାଳାକ୍ଷୀଙ୍କ ଆଦେଶରେ ତାହାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ ବୈଷ୍ଣବ ଧର୍ମର ତତ୍ତ୍ୱ ସମ୍ବନ୍ଧରେ ସାର-ବାନ ଉପଦେଶ ଦେଲା । ସେ ଶେଷରେ କହିଲା, 'ଦେବୀଙ୍କ ଆଦେଶ, ତୁମ୍ଭେ ଜଗତରେ ଶ୍ରୀକୃଷ୍ଣ ମହିମା ପ୍ରଚାର କର ଏବଂ ରାମମଣି ସଙ୍ଗେ 'ଭଜନ' ସାଧନ କର ।' ଏହା କହି ସେ ପ୍ରେତାତ୍ମା ଅଦୃଶ୍ୟ ହେଲା । ଏହି ସମାଚାରକୁ ଚଣ୍ଡିଦାସ ବିଶାଳାକ୍ଷୀଙ୍କ ଅପାର କରୁଣା ବୋଲି ବୁଝିଲେ ଏବଂ ତାହାଙ୍କ ଆଦେଶ ପାଳନ କରିବା ନିମନ୍ତେ ବଦ୍ଧପରିକର ହେଲେ । ତହୁଁ ସେ

॥ ଶ୍ରୀ ଅଶୋକକୁମାର ମହାପାତ୍ର ॥
ପ୍ରାକ୍-ବିଶ୍ୱବିଦ୍ୟାଳୟ କଳା

ରାଧାକୃଷ୍ଣ ପ୍ରେମରେ ମଜ୍ଜିଗଲେ ଓ ରାମମଣିଙ୍କୁ ରାଧା ଜ୍ଞାନ କଲେ । ତାଙ୍କର ବାହ୍ୟ ଜ୍ଞାନ ଲୋପ ହେଲା; କୃଷ୍ଣ ପ୍ରେମରେ ସେ ବିହ୍ୱଳ ହେଲେ ।

ଯୁବକ ଯୁବତୀଙ୍କ ଈଦୃଶ ବ୍ୟବହାର ଦେଖି ଲୋକମାନେ ଉଭୟଙ୍କ ଅପବାଦ ରଚନା କଲେ । ମିଥ୍ୟା କଳଙ୍କ ରୋପରେ ବାଧାପାଇ ରାମମଣି କୃଷ୍ଣପ୍ରେମ ବିଚାରର ଚଣ୍ଡିଦାସଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲା । ଚଣ୍ଡିଦାସ ଏଥିରେ ବିଚଳିତ ନ ହୋଇ କହିଲେ, "ଶ୍ୟାମ ଅପବାଦିନୀ" କଳଙ୍କ ଆମ୍ଭମାନଙ୍କ ପକ୍ଷେ ଶ୍ରେୟସ୍କର, ଖଳଲୋକମାନଙ୍କ ବୃଥା ନିନ୍ଦାରେ ବିଚଳିତ ହେବା ଉଚିତ ନୁହେଁ ।"

ଲୋକଚକ୍ଷୁରେ ସେମାନେ ଦୋଷୀ ଓ ଅଧର୍ମୀ ବିବେଚିତ ହେବାରୁ ମନ୍ଦିରରେ ରହିବା ସକାଶେ ଆଉ ଅନୁମତି ପାଇଲେ ନାହିଁ । ସମାଜରୁ ସେମାନେ ନିର୍ବାସିତ ହେଲେ । ଅତଏବ ଗ୍ରାମ ଉପକଣ୍ଠରେ ଗୋଟିଏ ନିର୍ଜନ ସ୍ଥାନରେ କୁଟୀର ନିର୍ମାଣ କରି ସେଥିରେ ବାସକଲେ ଏବଂ କୃଷ୍ଣନାମ ଭଜନରେ କାଳ ହରଣ କଲେ ।

ଅନ୍ନଚିନ୍ତା ଧର୍ମ ଆଚରଣରେ ଅନ୍ତରାୟ ହୋଇଥାଏ । ରାମମଣି ଧନାଭାବ ଦୂର କରିବା ଉଦ୍ଦେଶ୍ୟରେ ଦୁଇ ଚାରି ଦିନ ନିମନ୍ତେ ସ୍ଥାନାନ୍ତରକୁ ଗଲା । ଏଣେ ଆହାର ନ ପାଇ ଚଣ୍ଡିଦାସ ଦିନୁଦିନ ଦୁର୍ବଳ ହୋଇପଡ଼ିଲେ । ଅରକ୍ଷ ବ୍ରାହ୍ମଣଙ୍କ ଏହି ଦୁରବସ୍ଥା ଦେଖି ଗ୍ରାମବାସୀ କାହାରି ହୃଦୟରେ ଦୟାଭାବ ଉଦ୍ରେକ ହେଲା ନାହିଁ । ଜଳମୁଠାଏ ଦେଇ ମୁମୂର୍ଷୁ ପ୍ରାଣୀକୁ ବଞ୍ଚାଇବାକୁ କେହି ଇଚ୍ଛା କଲେ ନାହିଁ । ଦୁଇଦିନ କାଳ କଠୋର ଯନ୍ତ୍ରଣା ଭୋଗି ବ୍ରାହ୍ମଣଙ୍କ ପ୍ରାଣବାୟୁ ଉଡ଼ିଗଲା । ତୃତୀୟ ପ୍ରଭାତରେ ବ୍ରାହ୍ମଣର ପ୍ରାଣହୀନ ଶରୀର କୁଟୀରରେ ପଡ଼ିଥିବା ସମସ୍ତେ ଦେଖିଲେ । ସେମାନଙ୍କ ଅମଙ୍ଗଳ ଆଶଙ୍କା କରି ଗ୍ରାମବାସୀମାନେ ମିଳିତ ହୋଇ ଚିତା ପ୍ରସ୍ତୁତ କରି ଶବ ସଂସ୍କାର କରିବା ଉଦ୍‌ଯୋଗ କରୁଅଛନ୍ତି, ଏହି ସମୟରେ ବିରହ କାତର ରମଣୀ ଉନ୍ମାଦିନୀ ପରି ସେଠାରେ ଉପସ୍ଥିତ ହୋଇ ଉଚ୍ଚସ୍ୱରରେ ବିଳାପ କଲା ।

ଏହି ଉଚ୍ଚଧ୍ୱନିରେ ଚଣ୍ଡିଦାସ ନିଦ୍ରୋତ୍ଥିତ ବ୍ୟକ୍ତି ପରି ଉଠିବସିଲେ । ଏହି ଅଦ୍ଭୁତ ଘଟଣା ଦେଖି ସମବେତ ନରନାରୀ ପ୍ରାଣଭୟରେ ଯେ ଯଆଡ଼େ ବାଟ ଖୋଜିଲେ । ରାମମଣି ଆନନ୍ଦରେ ନୃତ୍ୟ କଲା ।

ଗ୍ରାମବାସୀଙ୍କ ନିଷ୍ଠୁର ଆଚରଣରେ ବ୍ୟଥିତ ହୋଇ ଚଣ୍ଡିଦାସ ଓ ରାମମଣି ସେହି ଗ୍ରାମ ତ୍ୟାଗ କରିବା ସଂକଳ୍ପ କରି ତତ୍ପରଦିନ ପ୍ରଭାତରୁ ସ୍ଥାନାନ୍ତରକୁ ଯିବା ସ୍ଥିର କଲେ ।

ଏଣେ ସେହି ରାତିରେ ଗ୍ରାମର ପ୍ରଧାନ ବ୍ୟକ୍ତି ବିଜୟନାରାୟଣଙ୍କୁ ଦେବୀ ବିଶାଳାକ୍ଷୀ ସ୍ୱପ୍ନରେ ଦର୍ଶନ ଦେଇ କହିଲେ, 'ରେ ମୂଢ଼ ! ମୋର ଶ୍ରେଷ୍ଠ ଭକ୍ତକୁ

ତୁମ୍ଭମାନେ ମିଥ୍ୟା ଅପବାଦ ଦେଇ କଳଙ୍କିତ କରିଅଛ । ତୁମ୍ଭମାନଙ୍କ ଦୁଷ୍ଟ ବ୍ୟବ-
ହାରରେ ସେ ଆତଙ୍କଗ୍ରସ୍ତ ହୋଇ ଗ୍ରାମ ତ୍ୟାଗ କରିବାକୁ ସ୍ଥିର କରିଅଛନ୍ତି ।
ଅତଏବ ତୁମ୍ଭେମାନେ ଯଦି ନିଜର ଓ ଗ୍ରାମର ମଙ୍ଗଳ ବାଞ୍ଛା କର, ତେବେ ସମସ୍ତେ
ଯାଇ ତାଙ୍କ କୁଟୀର ଦ୍ୱାରରେ ଲୁଣ୍ଠି ହୋଇ କ୍ଷମାପ୍ରାର୍ଥନା କର । ଏହା ନ କଲେ
ତୁମ୍ଭମାନଙ୍କ ଅମଙ୍ଗଳ ନିଶ୍ଚିତ । ଶଜଦ୍ଧନାରାୟଣ ପ୍ରଭାତରୁ ଉଠି ଏହି ସମ୍ବାଦ ସମସ୍ତଙ୍କୁ
ଜଣାଇଦେଲେ । ଗ୍ରାମବାସୀମାନେ ଏକତ୍ରିତ ହୋଇ ଚଣ୍ଡିଦାସଙ୍କ କୁଟୀର ସମ୍ମୁଖରେ
ଉପସ୍ଥିତ ହୋଇ କରଯୋଡ଼ି କ୍ଷମା ଭିକ୍ଷା କଲେ । ମହାତ୍ମା ଚଣ୍ଡିଦାସ ସମସ୍ତ ଭୁଲିଯାଇ
ପ୍ରେମଭାବରେ ସେମାନଙ୍କୁ ଆଲିଙ୍ଗନ କଲେ । ଈଦୃଶ ସରଳ ବ୍ୟବହାରରେ ଗ୍ରାମ-
ବାସୀମାନେ ଅତ୍ୟନ୍ତ ଆନନ୍ଦ ଉପଲବ୍ଧି କଲେ ଏବଂ ତାହାଙ୍କ ଉପଦେଶ ଗ୍ରହଣ
କରି ପବିତ୍ର ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ଚଣ୍ଡିଦାସ ନିଜ ସାଧୁ ବ୍ୟବହାରରେ
ଶତ୍ରୁମାନଙ୍କୁ ସୁଦ୍ଧା ବଶୀଭୂତ କରିଥିଲେ ।

ସେ ଜଣେ ଉଚ୍ଚଧରଣର କବି ଓ ସାଧକ ଥିଲେ । ତାହାଙ୍କ "ପଦ୍ୟାବଳୀ"
ବଙ୍ଗ ଭାଷାର ଅମୂଲ୍ୟ ରତ୍ନ । ବଙ୍ଗୀୟ ବୈଷ୍ଣବଗଣ ଚଣ୍ଡିଦାସଙ୍କ 'ପଦ୍ୟାବଳୀ' ଆବୃତ୍ତି
କରି ଆନନ୍ଦ ଅନୁଭବ କରନ୍ତି । ତାହାଙ୍କ କୀର୍ତ୍ତନ ଶ୍ରବଣରେ ଅତି କଠୋର ହୃଦୟ
ମଧ୍ୟ ତରଳିଯାଏ । ସେ ସମଗ୍ର ଜଗତକୁ ପ୍ରେମମୟ ଦେଖୁଥିଲେ ଏବଂ ବୈଷ୍ଣବମାନଙ୍କୁ
କୃଷ୍ଣଭକ୍ତି ସମ୍ବନ୍ଧରେ ସର୍ବଦା ଉପଦେଶ ଦେଉଥିଲେ ।

କଥିତ ଅଛି, ପବିତ୍ର ବୃନ୍ଦାବନ ଧାମରେ ସେ ସମାଧିସ୍ଥ ହୋଇଥିଲେ । ରାମମଣି
ମଧ୍ୟ ସେହିଠାରେ ଇହଲୀଳା ସାଙ୍ଗ କରିଥିଲେ ।



# ଭଗବତ୍ ଏକତ୍ୱ ଓ ଦିବ୍ୟ କର୍ମ

॥ ଶ୍ରୀ କାଳନ୍ଦୀଚରଣ ସେନାପତି ॥
ଦ୍ୱିତୀୟ ବାର୍ଷିକ ଉପାଧି

ମାନବ ସମାଜ ଅନେକ ସମୟରେ ଯୁକ୍ତିଗତ ବସ୍ତୁବାଦ ମଧ୍ୟ ଦେଇ ଅଗ୍ରସର ହେଉଅଛି । ଏହାର ଯେ ଆବଶ୍ୟକତା ନାହିଁ, ଏ ଧାରଣା ଭ୍ରମାତ୍ମକ । କାରଣ ଯେଉଁ ସବୁ ପ୍ରମାଣ ଏବଂ ଅଭିଜ୍ଞତାର ପ୍ରଶସ୍ତ କ୍ଷେତ୍ର ଆମ୍ଭମାନଙ୍କ ନିକଟରେ ତୋରଣମୁକ୍ତ, ତାହାମଧ୍ୟରେ ନିରାପଦରେ ପ୍ରବେଶ କରିବାକୁ ହେଲେ ଶିକ୍ଷାକୁ ବସ୍ତୁ ଜଗତର ବାସ୍ତବତା ମଧ୍ୟକୁ ଏବଂ ଇନ୍ଦ୍ରିୟଗ୍ରାହ୍ୟ ତଥ୍ୟର ଚରମ ସୀମା ମଧ୍ୟକୁ ନେଇଯାଇ ଆମର ଭ୍ରମକୁ ସଂଶୋଧନ କରିବାକୁ ହେବ । ରୋଗୀ କେବଳ ନୀରୋଗ ବ୍ୟକ୍ତିର ସୁଖ, ସମୃଦ୍ଧିକୁ ଅଧିକଭାବେ କଳ୍ପନା କରିପାରେ । ଯେଉଁ ବ୍ୟକ୍ତି ଦୁଃଖ ମଧ୍ୟ ଦେଇ ଜୀବନ ଅତିବାହିତ ନ କରିଛି, ସୁଖର ପ୍ରକୃତ ଆନନ୍ଦ ତା'ର ନିକଟରେ ବିଶେଷ ଭାବେ ଉପଭୋଗ୍ୟ ହୋଇପାରିବ ନାହିଁ । ଦୁଃଖ ମଧ୍ୟ ଦେଇ ସୁଖର ସନ୍ଧାନ ସମ୍ଭବପର — କାରଣ ଅନ୍ଧକାରର ପୂର୍ଣ୍ଣ ବିଲୁପ୍ତି ଆଲୋକର ଭେଳିକକୁ ବ୍ୟାହତ କରେ । ବର୍ତ୍ତମାନର ସମୟ ପୃଥିବୀ ପକ୍ଷରେ ଅମାବାସ୍ୟା — ପୁଣି ଆଜିର ସମୟ ଭବିଷ୍ୟତ ଜ୍ୟୋତ୍ସ୍ନାବର୍ଷୀର ଅବାହକ । ସୁତରାଂ ଏହା ନିଃସନ୍ଦେହ ଯେ, ଆମ୍ଭର ଭବିଷ୍ୟତ ମହତ୍ତ୍ୱପୂର୍ଣ୍ଣ ଏବଂ ଆମ୍ଭମାନଙ୍କର ଗତି ନୂତନ ଆଲୋକ-ତୀର୍ଥ-ଅଭିମୁଖୀ ।

କ୍ରମ ବିବର୍ତ୍ତନ ହିଁ ପ୍ରକୃତିର ନିୟମ । ପୃଥିବୀରେ ପ୍ରଥମେ ଥିଲା କେବଳ ଅଚେତନ ବସ୍ତୁ । ତହିଁ ମଧ୍ୟରେ କୌଣସି ପ୍ରାଣର ସ୍ପନ୍ଦନ ନ ଥିଲା — ଥିଲା କେବଳ ଗୋଟିଏ ଆକାର ଏବଂ ଅବସ୍ଥିତି — ସବୁ ଯେପରି ଅଲୌକିକ, ଅହେତୁକ । ତା'ପରେ ମିଳିଲା ପ୍ରାଣର ସନ୍ଧାନ — ଉଦ୍ଭିଦ ଜଗତର ଆବିର୍ଭାବ । ଗଛଟିଏ ଉଠିଲା — ପତ୍ରଧାରଣ କଲା — ଶାଖା, ପ୍ରଶାଖା ବିସ୍ତାର କରି କାୟାବୃଦ୍ଧି କଲା, ଗଛରେ ଫୁଲ ଫୁଟିଲା — ଫଳ ହେଲା — ପୁଣି ନୂତନ ଉଦ୍ଭିଦର ସୂତ୍ରପାତ ହେଲା । ବିବର୍ତ୍ତନର ନିୟମରେ ଇତର ପ୍ରାଣୀଙ୍କର ସୃଷ୍ଟି ହେଲା ଏବଂ ଶେଷଶେଷରେ ଦେଖାଦେଲା ମନୁଷ୍ୟ । କାଳକ୍ରମେ ଅଜ୍ଞାନ ମନୁଷ୍ୟର ବୁଦ୍ଧିବୃତ୍ତିର ବିକାଶ ଘଟିଲା । କର୍ମର ବ୍ୟାକୁଳତା ଓ ଅସ୍ଥିରତା ଆଧୁନିକ

ସମ୍ଭୋଗଶୀଳ ମନୁଷ୍ୟକୁ ଝକଳ କରି ଗଢି ତୋଳିଲା । ଅସମାନତା ଓ ଅଭାବ ଚିନ୍ତିତରେ ମନୁଷ୍ୟ ସଂଗ୍ରାମ କରିବାକୁ ବଦ୍ଧପରିକର ହେଲା । ହେଲେ ପଶୁଜଗତ ଠାରୁ ମନୁଷ୍ୟ ଏତେ ଉନ୍ନତ ହୋଇ ମଧ୍ୟ ପଶୁପ୍ରବୃତ୍ତିଗୁଡ଼ିକୁ ତା'ର ହୃଦୟରୁ ଦୂରୀଭୂତ କରିପାରିଲା ନାହିଁ — ତାକୁ ନିଜର ଅଜ୍ଞାନତା ହେତୁରୁ ସଞ୍ଚିତ କରି ରଖିଲା । ବାସନାର ପ୍ରଲୋଭନରେ ସେ ପ୍ରାଚୁର୍ଯ୍ୟ ଏବଂ ସମ୍ଭୋଗର ଅସରନ୍ତି ନିଶାରେ ନିମଜ୍ଜମାନ ହେଲା । ତା'ର ହୃଦୟରେ କାମ, କ୍ରୋଧ, କାମନା, ବାସନା ପ୍ରଭୃତି ପଶୁପ୍ରବୃତ୍ତିର ଅବତରଣ ତାକୁ ଅତୃପ୍ତ କରି ଗଢିତୋଳିଲା । ତୃପ୍ତିତାର ଆଦର୍ଶ କଳ୍ପନା ମଧ୍ୟରେ ସୀମାବଦ୍ଧ ହେଲା ।

ମନୁଷ୍ୟ ହୃଦୟର ଦେବତା ବାହ୍ୟ କାମନାର ବନ୍ଧନରେ ବନ୍ଦୀ ହୋଇ ରହିଲେ । ନିତ୍ୟ ଆନନ୍ଦ ଲାଭ କରିବା ପାଇଁ ସେହି ଆଶାସ୍ଥ ଆତ୍ମା ହୃଦୟ ମନ୍ଦିରରେ ଅବରୁଦ୍ଧ ହୋଇ ରହିଲେ ମଧ୍ୟ ପରମାତ୍ମାଙ୍କ ମିଳନ ପାଇଁ ସର୍ବଦା ଚର୍ଚ୍ଚନ କରି-ଉଠିଲେ । ମନୁଷ୍ୟ ସେହି ଆତ୍ମାର ଆହ୍ୱାନକୁ କର୍ଣ୍ଣପାତ ନ କରି ମନ, ପ୍ରାଣର ସେବକ ହୋଇ ଦୁଃଖ, ଦ୍ୱନ୍ଦ୍ୱକୁ ବରଣ କରିବା ପାଇଁ ବାଧ୍ୟ ହୋଇଛି । ଫଳରେ ଏକ ଅନାମୟ ଏବଂ ସୁନ୍ଦର ଜୀବନ ଯାପନରୁ ନିଜକୁ ବଞ୍ଚିତ କରି ରଖିଛି । ମନୁଷ୍ୟ ଯେତେବେଳେ ଆତ୍ମାର ନିର୍ଦ୍ଦେଶ ବୁଝି ସେହି ବିଶ୍ୱମୟ ପରମ ପ୍ରଭୁଙ୍କର ପାଦପଦ୍ମରେ ନିଜକୁ ସମ୍ପୂର୍ଣ୍ଣରୂପେ ସମର୍ପଣ କରିଦେବ, ସେତେବେଳେ ପାଶବିକ ଚେତନାର ସମୂଳ ବିନାଶ ଘଟି ମନୁଷ୍ୟ ଦିବ୍ୟ ଚେତନାରେ ଉଦ୍‌ବୁଦ୍ଧ ହେବ । ତା'ର ହୃଦୟର ସମସ୍ତ ଆବର୍ଜନା ଓ ଅନ୍ଧକାର ଅପସରି ଯାଇ ସତ୍ୟ ଜ୍ୟୋତି ଓ ସତ୍ୟଚେତନା ସେଠାରେ ବିରାଜମାନ କରିବେ । ସେତେବେଳେ ଜଣାଯିବ ଯେ ଏହି ସୃଷ୍ଟି ନିରର୍ଥକ ନୁହେଁ, ଶାଶ୍ୱତ ପ୍ରଭୁଙ୍କ ସୃଷ୍ଟି ମଧ୍ୟରେ ସମସ୍ତ କିଛି ସତ୍ୟମୟ ଏବଂ ସୁସଙ୍ଗତ । ସମସ୍ତ ସେହି ଅଖଣ୍ଡ ସତ୍ତାଙ୍କ ଉତ୍ସରୁ ଉତ୍ସରିତ — ତାଙ୍କରି ଅଭିବ୍ୟକ୍ତି ପାଇଁ ସଂସାରର ସୃଷ୍ଟି— ସବୁକିଛି ଅମୃତମୟ ଏବଂ ଆନନ୍ଦରେ ତନ୍ମୟ । ଶ୍ରୀ ଅରବିନ୍ଦଙ୍କ ଭାଷାରେ —

"A hidden sweetness and laughter in things, a sun-shine and gladness of life, everywhere a harmony and truth of order."

ଏହାହିଁ ଉଚ୍ଚତର ଦିବ୍ୟଜୀବନ— ଯାହାକୁ ଲାଭ କରିବା ପାଇଁ ଯୁଗେ ଯୁଗେ ମହା-ମନୀଷିଗଣଙ୍କର ନିରବଚ୍ଛିନ୍ନ ସାଧନା । ସେହି ଭଗବାନଙ୍କ ଚେତନା ସହିତ ଅର୍ଥାତ୍ ସେହି ପ୍ରେମମୟଙ୍କର ଦିବ୍ୟ ପ୍ରକୃତିରେ ମନୁଷ୍ୟ ନିଜକୁ ଏକ ସୂତ୍ରରେ ବାନ୍ଧି ରଖିବାହିଁ ତା' ଜୀବନର ଚରମ ଏବଂ ପରମ ଲକ୍ଷ୍ୟ ।

ଏହି ଉଚ୍ଚତର ଦିବ୍ୟଜୀବନ ପାଇବାକୁ ହେଲେ ମନୁଷ୍ୟକୁ ସମସ୍ତ ପାଶବିକ ଚେତନାରୁ ସମ୍ପୂର୍ଣ୍ଣ ମୁକ୍ତ ହେବାକୁ ହେବ ! ବିଶ୍ୱଗତ ପ୍ରକୃତି ତାହା ମଧ୍ୟରେ

ଆସୁରୀ ଶକ୍ତିକୁ ଲୁକ୍କାୟିତ କରି ରଖିଛି । କାମ, କ୍ରୋଧ, ଲୋଭ, ମୋହ, ମଦ ଏବଂ ମାତ୍ସର୍ଯ୍ୟ ପ୍ରଭୃତି ଷଡ଼-ରିପୁର ସେହି ବିଶ୍ୱ ପ୍ରକୃତିରୁ ଅବତରି ଆସି ମାନବର ହୃଦୟ ରାଜ୍ୟକୁ ଅଧିକାର କରନ୍ତି । କ୍ରମେ ଯେତେବେଳେ ମନୁଷ୍ୟ ସେମାନଙ୍କୁ ବାରମ୍ବାର ଆବାହନ କରେ ଏବଂ ତାଙ୍କୁ ଉପଭୋଗ କରିବାର ଦୁଆର ଖୋଲିଦେଇ ପାରେନାହିଁ, ସେତେବେଳେ ଏହି ରିପୁଗଣ ମାନବର ହୃଦୟ ସାମ୍ରାଜ୍ୟର ଅଧିକାରୀ ହୋଇଯାଆନ୍ତି ଏବଂ ମନୁଷ୍ୟ ସେମାନଙ୍କୁ ନିଜସ୍ୱ ପ୍ରକୃତିର ଅନ୍ତର୍ଗତ ବୋଲି ଜ୍ଞାନ କରେ । ଯେତେବେଳେ ମନୁଷ୍ୟ ସେହି ରିପୁ ସମ୍ପୃକ୍ତ ପାପ କାର୍ଯ୍ୟରେ ଲିପ୍ତ ହୁଏ ସେତେବେଳେ ତା'ର ଅନ୍ତଃସ୍ଥ ଚୈତ୍ୟପୁରୁଷ ପ୍ରଚ୍ଛନ୍ନ ଭାବରେ ହୃଦୟରେ ରୁଦ୍ଧ ହୋଇଯାଆନ୍ତି । ପୁଣି ମନୁଷ୍ୟ ଯେତେବେଳେ ଉଚ୍ଚ ଆଦର୍ଶ ରକ୍ଷା କରିବା ପାଇଁ ଉତ୍ସାହ ପାଏ,ସେତେବେଳେ ସେ ଦେଖେ ଯେ ଦିବ୍ୟ ଜୀବନକୁ ଫେରିପିବା ଏକ କଠିନ ବ୍ୟାପାର । କିନ୍ତୁ ସେହିକ୍ଷେତ୍ରରେ ମନୁଷ୍ୟ ତାହାର ଭ୍ରାନ୍ତ ଗତିବୃତ୍ତିକୁ ଲକ୍ଷ୍ୟ କରି ସେମାନଙ୍କୁ ପ୍ରତ୍ୟାଖ୍ୟାନ କରିପାରିଲେ କ୍ରମଶଃ ପଶୁ ପ୍ରକୃତି ନିସ୍ତେଜ ହୋଇପଡନ୍ତି । ସର୍ବଦା ଦୋଷ ତ୍ରୁଟି ଏବଂ ଭ୍ରାନ୍ତ ଗତିବୃତ୍ତିର ଚିନ୍ତାରେ ବ୍ୟାପୃତ ନ ରହି ଯଦି ମନୁଷ୍ୟ ତାହାର ଆଦର୍ଶ ଦିଗକୁ ଚକ୍ଷୁ ଫେରାନ୍ତା ତେବେ ଲକ୍ଷ୍ୟରେ ପହଞ୍ଚିବା ସହଜସାଧ୍ୟ ହୁଅନ୍ତା ।

ଦିବ୍ୟ ଚେତନା ଆଡ଼କୁ ଉନ୍ମୁକ୍ତ ହେବା ସର୍ବଦା କଠିନ । ପୁଣି ମାନବ ଆଧାରରେ ଦିବ୍ୟଶକ୍ତିଙ୍କୁ ଉତ୍ତରଣ କରି ଧରିରଖିବା ଆହୁରି କଷ୍ଟକର । ପ୍ରକୃତିର ପ୍ରତ୍ୟେକ ଅଙ୍ଗ ତାହାର ପୁରାତନ ଗତିବୃତ୍ତି ଧରି ଚାଲିବାକୁ ଚାହେଁ । ମନ ଓ ପ୍ରାଣ ଦିବ୍ୟଶକ୍ତିଙ୍କ ଅଧୀନସ୍ଥ ହେବାକୁ ଯେତେଦୂର ପାରନ୍ତି ପ୍ରତିରୋଧ କରନ୍ତି; ସେମାନେ ଏହି ବୋଧ ରଖନ୍ତି ଯେ ସେମାନେ ଯଦି ଉଚ୍ଚତର ଶକ୍ତିଙ୍କ ପ୍ରତି ଉନ୍ମୀଳିତ ହେବେ, ତେବେ ସେମାନଙ୍କୁ ଊର୍ଦ୍ଧ୍ୱରୁ କୌଣସି ବିଷୟର ଅଧୀନସ୍ଥ ହେବାକୁ ହେବ ଏବଂ ସେମାନଙ୍କର ଆଧିପତ୍ୟ ପ୍ରତିହତ ହେବ । ମନ, ପ୍ରାଣ ଯେଉଁମାନେ କି ସ୍ୱକୀୟ ସ୍ୱଭାବରେ କାମନା ବାସନାର ଏକାନ୍ତ ପ୍ରୟାସୀ, ସେମାନଙ୍କୁ ପ୍ରଥମେ ଚିହ୍ନି ରଖିବାକୁ ହେବ । ତା'ପରେ ଆଧାରର ସେହି ଦୁର୍ବଳ ଅଂଶକୁ ଆନ୍ତରିକ ଓ ଅଖଣ୍ଡ ଭାବରେ ଦିବ୍ୟଶକ୍ତିଙ୍କ ଠାରେ ନିବେଦନ କରିବାକୁ ହେବ ।

ସୁତରାଂ ମାନବ ହୃଦୟରେ ଏକ ଉଚ୍ଚତର ଆଧାରର ଆବଶ୍ୟକତା ରହିଛି । "To live a higher life needs a higher equipment." ଅର୍ଥାତ୍ ଉଚ୍ଚତର ଜୀବନଧାରା ପାଇଁ ଉଚ୍ଚତର ଆଧାର ମଧ୍ୟ ଆବଶ୍ୟକ । ଦୈହିକ ଚେତନାରେ ଏକ ବ୍ୟାପକ ସ୍ଥିରତା ପ୍ରତିଷ୍ଠିତ କରିବାକୁ ହେବ । ସମସ୍ତ ବିକ୍ଷୋଭକାରୀ ଭାବନା, ଭୁଲ ଅନୁଭୂତି, ଚିନ୍ତାର ବିଭ୍ରାନ୍ତି ଓ ନିରାନନ୍ଦ ଗତିବୃତ୍ତି ଆଦିର ଆକ୍ରମଣରୁ ନିଜକୁ ମୁକ୍ତ ରଖିବାକୁ ହେବ ।

ନିଶ୍ଚଳ ସ୍ଥିରବତାର ଯେଉଁ ଆଧାର ହୃଦୟ ମଧ୍ୟରେ ପ୍ରସ୍ତୁତ ହେବ, ତାହା ମଧ୍ୟକୁ କୌଣସି ପୁରାତନ ଆବର୍ଜନା ତଥା କୁଚିନ୍ତା ଯେପରି ପ୍ରବେଶ ନ କରେ ସେଥି

ପ୍ରତି ସଜାଗ ରହିବାକୁ ହେବ । ଊର୍ଦ୍ଧ୍ୱରୁ ସତ୍ୟ, ଜ୍ୟୋତି, ଶାନ୍ତି, ଆନନ୍ଦ ଓ ଶକ୍ତି ପ୍ରଭୃତି ଦିବ୍ୟଶକ୍ତି ଅବତରଣ କରିବା ପାଇଁ ଅପେକ୍ଷା କରି ରହିଛନ୍ତି । ଯେତେବେଳେ ସତ୍ତା ତା'ର ଅହଂପ୍ରସୂତ ଦୃଷ୍ଟିଭଙ୍ଗୀକୁ ଲୋପ କରି ଏକାଗ୍ର ଚିତ୍ତରେ ବିଶ୍ୱ-ଚୈତନ୍ୟଙ୍କ ଅନୁଶୀଳନ କରିବ ଓ ଗ୍ରହଣଶୀଳ ହୋଇ ସମସ୍ତ ଦିବ୍ୟ ପ୍ରକୃତିକୁ ହୃଦୟରେ ଧାରଣ କରିବା ପାଇଁ ସମର୍ଥ ହେବ ସେତେବେଳେ ସମସ୍ତ ପଶୁ-ବୃତ୍ତି ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରତ୍ୟାଖ୍ୟାତ ହେବେ ।

ଭଗବତ୍-ଏକତ୍ୱ ଲାଭର ସାଧନା କ୍ଷେତ୍ରରେ ଶ୍ରଦ୍ଧା ଓ ସମର୍ପଣର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ନିଜର ସତ୍ତା ଓ ସବୁକିଛି ଯଦି ନିଃଶେଷରେ ଭଗବାନଙ୍କୁ ସମର୍ପଣ କରିଦିଆଯାଏ ଏବଂ ତାଙ୍କ ଲାଗି ଓ ତାଙ୍କ ନିର୍ଦ୍ଦେଶରେ ଯଦି କର୍ମ କରାଯାଏ, ତେବେ ମନୁଷ୍ୟର କୁପ୍ରବୃତ୍ତିର ରୂପାନ୍ତର କ୍ଷିପ୍ର ଭାବରେ ସମାହିତ ହୁଏ । ଯେତେବେଳ ପର୍ଯ୍ୟନ୍ତ ମନୁଷ୍ୟର ମୁଁକାର ବୋଧ ଥାଏ, ସେ ପର୍ଯ୍ୟନ୍ତ ସେ ଅହଙ୍କାର ଓ ଅସ୍ମିତାର ଦର୍ପରେ ନିଜର ପ୍ରଚେଷ୍ଟା ବଳରେ ସେ କାର୍ଯ୍ୟ କରୁଛି ବୋଲି ମନେକରେ, ସେତେବେଳ ପର୍ଯ୍ୟନ୍ତ ଅଭୀଷ୍ଟ ଲାଭ କରିବା ଅସମ୍ଭବ ହୋଇପଡ଼େ । ଯେତେବେଳେ ହୃଦୟର ଦରଜା ଖୋଲିଯାଏ, ଚୈତ୍ୟପୁରୁଷଙ୍କର ଆବିର୍ଭାବ ହୋଇ ଭଗବତ୍ ପ୍ରାପ୍ତି ପାଇଁ ଅଭୀପ୍ସା ଉଜ୍ଜ୍ୱଳ ଶିଖା ବିସ୍ତାର କରି ଊର୍ଦ୍ଧ୍ୱମୁଖୀ ହୋଇଉଠେ, ସେତେବେଳେ "ମୁଁ'ତ୍ୱ କେଉଁଆଡ଼େ ଅଜାଣତରେ ଲୁଚିଯାଏ ।

ଆତ୍ମସମର୍ପଣ ବିନା ରୂପାନ୍ତର ପ୍ରାପ୍ତି ଅସମ୍ଭବ । ଅତିସ୍ଫୀତ ଅହମିକାର କଣ୍ଟକମୟ ଭାବ ମନ ମଧ୍ୟରେ ରହିଥିଲେ ବ୍ରହ୍ମଚର୍ଯ୍ୟ ପାଳନ କରିବା କଷ୍ଟକର ହୁଏ । ବ୍ରହ୍ମଚର୍ଯ୍ୟ ଅର୍ଥ ବ୍ରହ୍ମଙ୍କର ସନ୍ଧାନ । ବ୍ରହ୍ମ ସର୍ବତ୍ର ପରିବ୍ୟାପ୍ତ— ସେ ପୁଣି ସର୍ବାଧିକାରୀ । ଏହି ବ୍ରହ୍ମଙ୍କର ସନ୍ଧାନ କରିବାକୁ ହେଲେ ସତ୍ତାର ଅନ୍ତଃପ୍ରଦେଶ ମଧ୍ୟକୁ ବୁଡ଼ିଯିବାକୁ ହେବ । ବିଶ୍ୱଗତ ଭଗବାନଙ୍କ ଅନୁଭୂତି, ବିଶ୍ୱଶକ୍ତିଙ୍କ ପ୍ରତ୍ୟକ୍ଷ ପ୍ରଗତି, ବିଶ୍ୱ-ପ୍ରକାଶର ଓ ବିଶ୍ୱଲୀଳାର ଉପଲବ୍ଧି ଓ ଅର୍ଥବୋଧ— ଏହି ସକଳ ମଧ୍ୟରେ ଅହମିକା ବିଲୋପ ହୋଇଯିବ ଏବଂ ସତ୍ତା ଆଉ ଚେତନା ସେହି ବିଶ୍ୱମୟଙ୍କର ଅଖଣ୍ଡ ଚେତନା ସହିତ ଏକୀଭୂତ ହୋଇ ଯୁଗପତ୍ ଭାବରେ ଜୀବ-ବିନ୍ଦୁ ଅସୀମ ଶକ୍ତି-ସିନ୍ଧୁ ମଧ୍ୟରେ ଏକାକାର ହୋଇଉଠିବ ।

ଭଗବତ୍-ଏକତ୍ୱ ଲାଭର ଏହି ଯେଉଁ ସିଦ୍ଧି ଆସେ, ସେତେବେଳେ ମନୁଷ୍ୟର ଅନ୍ତର୍ଦୃଷ୍ଟି ଖୋଲିଯାଇଥାଏ । ସେତେବେଳେ ଏହି ସିଦ୍ଧି ବ୍ୟକ୍ତି-ସୀମା ମଧ୍ୟରେ ଆବଦ୍ଧ ନ ରହି ସମଷ୍ଟିଗତ ଭାବେ କାର୍ଯ୍ୟ କରି ସାର୍ଥକ ହୁଏ । ବ୍ୟକ୍ତି ଦିବ୍ୟ ଚେତନା ସମ୍ପନ୍ନ ହୋଇ ସମୂହ ମାନବର ବିକାଶ ସାଧନ ପାଇଁ କର୍ମତତ୍ପର ହୁଏ । ମାନବ ଇଚ୍ଛା-ପ୍ରସୂତ କର୍ମର କୌଣସି ସମ୍ଭାବନା ରହେନାହିଁ । ଜାଗ୍ରତ ଚୈତ୍ୟପୁରୁଷଙ୍କର ନିର୍ଦ୍ଦେଶରେ

ଭଗବାନଙ୍କ କାର୍ଯ୍ୟ ସମ୍ପନ୍ନ ହୁଏ । ପାର୍ଥିବ ଚେତନା ଭିତରେ ଦିବ୍ୟ ଚେତନାର ପ୍ରତିଷ୍ଠା କରିବା ପାଇଁ ଯେଉଁ ପ୍ରଚେଷ୍ଟା ହୁଏ ତାହା ଦିବ୍ୟକର୍ମ ।

ଈଶ୍ୱରଙ୍କ ଭଗବାନଙ୍କ ସାନ୍ନିଧ୍ୟ ଲାଭ କରି ସତ୍ତା ମଧ୍ୟରେ ଅନ୍ତରପାର୍ଶ୍ୱିକ ସ୍ଫୁରଣ ଘଟେ । ତାତ୍ତ୍ୱିକ ପ୍ରବୃତ୍ତି ପ୍ରତ୍ୟାଖ୍ୟାନ ଦ୍ୱାରା ଏବଂ ଭଗବାନଙ୍କ ନିକଟରେ ଆତ୍ମସମର୍ପଣ ଦ୍ୱାରା ଦିବ୍ୟ ପ୍ରକୃତିରେ ରୂପାନ୍ତରିତ ହୁଅନ୍ତି । ଭୌତିକ ଶରୀରର ସମସ୍ତ ଆସକ୍ତି ଦୂରୀଭୂତ ହୋଇ ଜୀବନ ନିରାମୟ ହୋଇଉଠେ । ଭଗବାନଙ୍କ କୃପା ବଳରେ ମାନବ ହୃଦୟରେ ଗଢିଉଠେ ସେହି ବାସ୍ତବ ପରଚେତନା ଯାହା ସମଗ୍ର ଅନ୍ଧକାର ଆଧାରକୁ ତେଜୋମୟ କରି ସବଳ ନିଜର ଶିଖା ବିସ୍ତାର କରେ । ଏଇଠି ଘଟେ ଚୈତ୍ୟ ଉନ୍ମୀଳନ ତଥା ଚୈତ୍ୟ ସତ୍ତାର ନବଜାଗରଣ । ଅନ୍ତରାଳର ଯବନିକା ଛିନ୍ନ ହୋଇ-ଯାଏ ଏବଂ ଆମର ଜୀବାତ୍ମା ତିର ଜାଗ୍ରତ ହୋଇ ସେହି ଅନିର୍ବଚନୀୟ ସତ୍ୟମୟ ପ୍ରଭୁଙ୍କର ପରମାତ୍ମା ସହିତ ସମ୍ମିଳିତ ହୋଇଯାଏ । ଶ୍ରୀ ଅରବିନ୍ଦ କହନ୍ତି—

> "In moments when the inner lamps are lit—
> And the life's cherished guests are left outside,
> Our spirit sits alone and
> Speaks to its gulfs."
>
> ଯେଉଁ ମୁହୂର୍ତ୍ତରେ ଅନ୍ତର ଦୀପାଳୀ ··· ··· ··· ଜଳିଉଠେ,
> ଏବଂ ଜୀବନର ବାଞ୍ଛିତ ଅତିଥି ସବୁ ··· ··· ··· ବାହାରେ ପଡ଼ିରହନ୍ତି
> ଆମର ଆତ୍ମା ଏକାକୀ ବସି ··· ··· ···
> ତା'ର ବ୍ୟବଧାନ ସଙ୍ଗେ କଥାବାର୍ତ୍ତା କରେ ।

ଉପରୋକ୍ତ ଅବସ୍ଥା ପ୍ରାପ୍ତ ହେଲେ, ମନୁଷ୍ୟ ଜୀବନର ପୂର୍ଣ୍ଣତା ଆସେ । ଅଜ୍ଞାନ ମାନବ ସଂକୀର୍ଣ୍ଣତାର ଗର୍ତ୍ତରୁ ନିଜକୁ ଦୂରେଇ ଆଣି, ଏହି ପୂର୍ଣ୍ଣତାର ସାଧନାରେ ଯଦି ବ୍ରତୀ ହୁଅନ୍ତେ ତେବେ ଜାତି ତଥା ସମାଜର ପ୍ରାଣ-ତନ୍ତ୍ରୀରେ ମୃତ୍ୟୁସଂଜୀବନୀର ସଞ୍ଚାର କରି ଏହି ମୃତ୍ୟୁଲୋକକୁ ଅମରାବତୀର ଶ୍ରେଷ୍ଠ ଆସନରେ ଆସୀନ କରନ୍ତେ । ଏହାହିଁ ସୃଷ୍ଟି-କର୍ତ୍ତାଙ୍କର ଉଦ୍ଦେଶ୍ୟ ଏବଂ ଏହି ଉଦ୍ଦେଶ୍ୟ ବିଶ୍ୱବାସୀଙ୍କର ସମୂହ ପ୍ରଚେଷ୍ଟା ଦ୍ୱାରା ଫଳବତୀ ହେଲେ, ସମ୍ଭବ ହେବ ପରମେଶ୍ୱରଙ୍କ ବିଚିତ୍ର ଲୀଳାର ସ୍ୱମୋହନ ପ୍ରକାଶ ।

# ପ୍ରଚଳିତ ଶିକ୍ଷା ବ୍ୟବସ୍ଥା

।। ଶ୍ରୀ ବିଜୟଭୂଷଣ ସିଂହ ।।
୩ୟ ବାର୍ଷିକ କଳା

ସ୍ୱାଧୀନତା ପରଠାରୁ ପ୍ରାୟ ୨୩ ବର୍ଷ ଧରି ଦେଶର ଶିକ୍ଷା ପଦ୍ଧତିର ସଂସ୍କାର ସାଧନ ପାଇଁ ନାନା ଉଦ୍ୟମ ହୋଇଆସିଛି । ବହୁ କମିଶନ୍, କମିଟି ଓ ବୋର୍ଡ ବସି ବହୁ ଆଲୋଚନା ହୋଇଛି ଓ ସୁପାରିଶମାନ କରାଯାଇଛି । କିନ୍ତୁ ବାସ୍ତବ କ୍ଷେତ୍ରରେ କୌଣସି ସଂସ୍କାର ଏପର୍ଯ୍ୟନ୍ତ ହୋଇନାହିଁ । ସ୍ୱାଧୀନତା ପୂର୍ବରୁ ଶିକ୍ଷାର ପରିସର ସୀମିତ ଥିଲା କିନ୍ତୁ ଆମରି ଏହି ଉତ୍କଳ ଭୂଇଁରେ ଆଜି ୮୪ଟି ସରକାରୀ ଏବଂ ବେସରକାରୀ କଲେଜ ମୁଣ୍ଡ ଟେକି ଉଠିଲେଣି ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଉପାଧିଧାରୀ ବେକାର ସଂଖ୍ୟାର ବୃଦ୍ଧି ।

ଇଞ୍ଜିନିୟରିଂ ଓ ଅନ୍ୟାନ୍ୟ ବୈଷୟିକ କ୍ଷେତ୍ରରେ ଉଚ୍ଚ ଉପାଧି ଲାଭ କରିଥିବା ହଜାର ହଜାର ତରୁଣ କର୍ମସଂସ୍ଥାନ କରି ନ ପାରି ହା ହୁତାଶରେ ଜୀବନ କାଟୁଛନ୍ତି । ଏହାର ପ୍ରତିକ୍ରିୟା ସ୍ୱରୂପ ଯୁବକ ଓ ଛାତ୍ରସମାଜରେ ନାନା ବିଶୃଙ୍ଖଳା ଓ ଅଶାନ୍ତି ପ୍ରକାଶ ପାଉଛି । ଦେଶର ଅର୍ଥନୈତିକ ଅବସ୍ଥା ମଧ୍ୟ ଭଲ ନୁହେଁ । ଜୀବିକା ନିର୍ବାହର ଖର୍ଚ୍ଚ କ୍ରମଶଃ ବଢ଼ି ଚାଲିଛି । ଆମର ଆବଶ୍ୟକତା ପୂରଣର ସାମର୍ଥ୍ୟର ଅଭାବ ରହିଛି । ଶହ ଶହ ବର୍ଷ ଧରି ଆମେ, ଯେଉଁ ଶିକ୍ଷା ପାଇଛୁ ତାହା ଆମକୁ ଶ୍ରମ ବିମୁଖ କରିଦେଇଛି । ଏହି ଶିକ୍ଷାର କୁଫଳ ଆମେ ଆଜି ପଦେ ପଦେ ଉପଲବ୍ଧି କରୁଛୁ ।

ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଅନୁଯାୟୀ କୌଣସି ଛାତ୍ର ବା ଛାତ୍ରୀ ମାଟ୍ରିକ୍ ପାସ୍ କଲେ ମେଧା ଥାଉ ବା ନ ଥାଉ ତାହାକୁ କଲେଜରେ ପଢ଼ିବାକୁ ହେବ । ଉପାଧି ହାସଲ ପରେ ସରକାରୀ ଚାକିରି ନ ହେଲେ ଡାକ୍ତରୀ ବା ଓକିଲାତି କରିବାହିଁ ଆମ ଜୀବନର ପ୍ରଧାନ ଲକ୍ଷ୍ୟ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନ୍ୟ ଦେଶ ପରି ଆମ ଯୁବକମାନଙ୍କୁ ଶିଳ୍ପାଭିମୁଖୀ ଶିକ୍ଷା ଦିଆଯାଉ ନାହିଁ । ଶାରୀରିକ ଶ୍ରମ ବିମୁଖ ମନୋଭାବ ଆମକୁ ପଙ୍ଗୁ କରିଦେଉଛି । ଶିକ୍ଷା ଦୀକ୍ଷା ସେମାନଙ୍କୁ ଜୀବନ ସଂଗ୍ରାମରେ ଦାୟୀ ହେବାର କଳ କୌଶଳ ଶିଖାଇ ନ ଥିବାରୁ ସେମାନେ ପ୍ରଖର ସ୍ରୋତରେ କୁଟା ଭଳି ଲକ୍ଷ୍ୟହୀନ ଭାବରେ ଭାସୁଥାନ୍ତି ।

ଏସବୁ ଦୃଷ୍ଟିରୁ ଯୁବକମାନଙ୍କୁ ଉପାର୍ଜନକ୍ଷମ ମନୁଷ୍ୟ ରୂପେ ଗଢ଼ିବା ଲାଗି ବ୍ୟବହାରିକ ଶିକ୍ଷା ଏକାନ୍ତ ଆବଶ୍ୟକ । ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଶିକ୍ଷାର ଆମୂଳଚୂଳ ପରିବର୍ତ୍ତନ ଦରକାର । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଏପରି ସମ୍ପର୍କ ରହିବା ଉଚିତ ଯାହାଫଳରେ ଶିକ୍ଷକମାନେ ଛାତ୍ରମାନଙ୍କ ଉପରେ ପ୍ରଭାବ ପକାଇ ପାରିବେ । ରାଜନୈତିକ ସାମ୍ପ୍ରଦାୟିକ, ଭେଦଭାବ ଯେପରି ଶିକ୍ଷକ ଓ ଛାତ୍ର-ମାନଙ୍କୁ ସ୍ପର୍ଶ ନ କରିବ, ସେ ଦିଗରେ ମଧ୍ୟ ବ୍ୟବସ୍ଥା ହେବା ଉଚିତ । ସରକାର ଶିକ୍ଷାର ବିକାଶ ଓ ପ୍ରସାର ଦିଗରେ ଅଧିକରୁ ଅଧିକ ଅର୍ଥ ବିନିଯୋଗ କରିବା ଆବ-ଶ୍ୟକ । ପ୍ରତ୍ୟେକ ବିଦ୍ୟାଳୟର ପାରିପାର୍ଶ୍ୱିକ ଅବସ୍ଥା ଲକ୍ଷ କରି କୃଷିକ୍ଷେତ୍ର ବା କୁଟୀର ଶିଳ୍ପ କେନ୍ଦ୍ର ରଖାଯିବା ବାଞ୍ଛନୀୟ । ଛାତ୍ର ଯେପରି ଅନ୍ତତଃ ମାଟ୍ରିକ ପାସ୍ କରିବା ପରେ ଚାକିରି ପ୍ରତି ଆଗ୍ରହୀ ନ ହୋଇ କୃଷି ବା ଶିଳ୍ପ ପ୍ରତି ଆକୃଷ୍ଟ ହେବ ସେ ଦିଗରେ ଉପଯୁକ୍ତ ପନ୍ଥା ଯଥାଶୀଘ୍ର କରିବା ଉଚିତ ।

ଓଡ଼ିଶା କଥା ବିଚାର କଲେ ଦେଖାଯିବ ଯେ, ଶସ୍ୟଶ୍ୟାମଳା ଏହି ପ୍ରଦେଶଟିରେ ପ୍ରାକୃତିକ ସମ୍ପଦର ଅଭାବ ନାହିଁ । ଏପର୍ଯ୍ୟନ୍ତ ଯେଉଁ ପରିମାଣ ସଂପଦର ବିନିଯୋଗ କରାହୋଇଛି ସେଥିରେ ଆମର ଅଂଶ ଖୁବ୍ କମ୍ । ଆମର କଞ୍ଚାମାଲ ବିଦେଶକୁ ରପ୍ତାନି ହେଉଛି କିନ୍ତୁ ତାହାର ବିନିଯୋଗ ଆମ ଯୁବକ ସମାଜର ଆଗ୍ରହ ନାହିଁ କି ସରକାରଙ୍କ ତରଫରୁ କିଛି ପ୍ରେରଣା ନାହିଁ । ଓଡ଼ିଶାକୁ ଶିଳ୍ପସମୃଦ୍ଧ କରି ଗଢ଼ିବା ପାଇଁ ଏବେ ମଧ୍ୟ ସମୟ ରହିଛି । ଆମର ଯୁବକମାନଙ୍କୁ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା କରିଆରେ ଏଥିପାଇଁ ତାଲିମ କରିବାକୁ ପଡ଼ିବ । ଆମର ଶିକ୍ଷାପଦ୍ଧତି ଦୋଷରୁ ବିଶ୍ୱ-ବିଦ୍ୟାଳୟ ଗୁଡ଼ିକ ପ୍ରକୃତ ଶିକ୍ଷାଦାନ କେନ୍ଦ୍ର ନ ହୋଇ ଉପାଧି ପ୍ରସ୍ତୁତିର କାରଖାନା ହୋଇଛି । ଯେନତେନ ପ୍ରକାରେଣ ଉପାଧି ବିତରଣ କରିବାହିଁ ବିଶ୍ୱବିଦ୍ୟାଳୟର କର୍ତ୍ତବ୍ୟ ବୋଲି ମନେ କରାଯାଉଛି । ଅଧୁନାତନ ଛାତ୍ରମାନେ କେବଳ ନୋଟ୍ ବହିର ଆଶ୍ରୟ ନେଇ ପାସ୍ କରିବାହିଁ ଶିକ୍ଷାର ଲକ୍ଷ୍ୟ ବୋଲି ଧରିନେଇଛନ୍ତି । ଦୋଷ ଶିକ୍ଷାର ନୁହେଁ, ଶିକ୍ଷା ପ୍ରଣାଳୀର ।

ପାଶ୍ଚାତ୍ୟ ଦେଶରେ To bring the Factory into the school and the school into the factory. ଅର୍ଥାତ୍ କାରଖାନା ଭିତରେ ସ୍କୁଲର ବାତା-ବରଣ ଓ ସ୍କୁଲ ଭିତରେ କାରଖାନାର ବାତାବରଣ ଆଣିବା ଉଦ୍ୟମ ଫଳରେ ଶିଳ୍ପ କ୍ଷେତ୍ରରେ ସେମାନେ ଅଗ୍ରସର ହୋଇଛନ୍ତି । ଯଦି ଆମେ ଏହି ପ୍ରଥା ଅବଲମ୍ବନ କରିପାରିବେ ତେବେ ବେକାର ସଂଖ୍ୟା ଦୂରିଭୂତ ହୋଇ ଦେଶର ଉନ୍ନତି ଓ ଅଗ୍ରଗତି ହୋଇ-ପାରନ୍ତା । କିନ୍ତୁ ଆମ ଶିକ୍ଷା ସହିତ ବାସ୍ତବ ଜୀବନର ସମ୍ପର୍କ ଅତି ଅଳ୍ପ । ଶିକ୍ଷା ଯଦି ବର୍ତ୍ତମାନ ସହିତ ସମ୍ପର୍କ ନ ରଖି ଅତୀତକୁ ଧରି ପଡ଼ିଥିବ, ତାହା ପ୍ରଗତିର ଅନ୍ତରାୟ ହେବ । ସମାଜ ସ୍ଥିତିଶୀଳ ନୁହେଁ, ଗତିଶୀଳ । ତେଣୁ ଅତୀତର କର୍ମପନ୍ଥା ଆଜିର

ପରିସ୍ଥିତି ପାଇଁ ଅଚଳ ଦୋଅଣୀ ସଦୃଶ । ପ୍ରକୃତରେ ଶିକ୍ଷା ଉନ୍ନତିର ଅନ୍ତରାୟ ନୁହେଁ, ବରଂ ବାସ୍ତବ ଶିକ୍ଷାର ଅଭାବହିଁ ଉନ୍ନତିର ପରିପନ୍ଥୀ । ଆମେ ଆଜ ଶିକ୍ଷା କହିଲେ ଯାହା ବୁଝୁ, ତାହା ପ୍ରକୃତ ଶିକ୍ଷା ନୁହେଁ । କାରଣ ଯେଉଁ ଶିକ୍ଷା ଜୀବିକା ଉପାୟର ପଥପ୍ରଦର୍ଶନ କରି ନ ପାରେ, ସେହି ଶିକ୍ଷାର ସାର୍ଥକତା କେଉଁଠି ? କେବଳ ଉପାଧି ଲାଭହିଁ ଶିକ୍ଷାର ଉଦ୍ଦେଶ୍ୟ ନୁହେଁ, ମଣିଷ ଗଢିବାହିଁ ଏହାର ଲକ୍ଷ୍ୟ ।

ଭାରତ ଗୋଟିଏ କୃଷିପ୍ରଧାନ ଦେଶ ହେଲେମଧ୍ୟ ଦିନକୁ ଦିନ ଲୋକସଂଖ୍ୟା ଯେଉଳି ବଢିଚାଲିଛି, ସେ ଦୃଷ୍ଟିରୁ ଅଧିକାଂଶ ଲୋକ କୃଷି ଉପରେ ନିର୍ଭର କରି ଚଳିବା ସମ୍ଭବ ନୁହେ । ତେଣୁ କେବଳ କୃଷିକ୍ଷେତ୍ରରେ ଯୁବକମାନଙ୍କୁ ନିଯୁକ୍ତ କରିବା ପାଇଁ ବ୍ୟବସ୍ଥା ଗ୍ରହଣ କରିବା ଦ୍ୱାରା ବେକାର ସମସ୍ୟାର ସମାଧାନ କରାଯାଇ ପାରିବ ନାହିଁ । ଅତଏବ ଶିଳ୍ପ ଓ ବାଣିଜ୍ୟର ଉତ୍କର୍ଷ ସାଧନ ଦିଗରେ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିବ । ଶିଳ୍ପ ଓ ବାଣିଜ୍ୟ ଶିକ୍ଷାର ପ୍ରସାର ଓ ଗବେଷଣା ଉପରେ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ଶିକ୍ଷା ନାମରେ ଆମ ଦେଶରେ ଯେଉଁ ଅଦ୍ଭୁତ ପ୍ରଥା ଚାଲିଆସିଛି ତାହାହିଁ ଆମ ଅବନତିର କାରଣ । ଦେଶର ପରିବେଶ ଓ ଆବଶ୍ୟକତାକୁ ଚାହିଁ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରାଗଲେ ବାସ୍ତବ ଜନହିତକର ପରିକଳ୍ପନା ଗୁଡିକୁ କାର୍ଯ୍ୟକାରୀ କରିବା ଲାଗି ଉପଯୁକ୍ତ ଲୋକ ଓ ଜ୍ଞାନର ଅଭାବ ରହିବ ନାହିଁ । ଶିକ୍ଷାର ଦୃଢ଼ ଭିତ୍ତି ଉପରେହିଁ ଦେଶର ଭବିଷ୍ୟତ ନିର୍ଭର କରୁଛି । ତେଣୁ ଶିକ୍ଷା ବ୍ୟବସ୍ଥାର ସଂସ୍କାର ସାଧନ ଦିଗରେ ତୁରନ୍ତ ପଦକ୍ଷେପ ଗ୍ରହଣ କରିବା ବାଞ୍ଛନୀୟ ।

ଦିଲ୍ଲୀରେ ନିକଟରେ ପ୍ରକାଶିତ ହୋଇଥିବା ନାଗ ଚୌଧୁରୀ ରିପୋର୍ଟରେ ବହୁ ନୂତନ ପନ୍ଥା ସ୍ଥିର ହୋଇଛି । ଯଦି ଏହା କାର୍ଯ୍ୟକାରୀ କରାଯାଏ ତାହାହେଲେ ଶିକ୍ଷା ପଦ୍ଧତିର ଉନ୍ନତି ଅବଶ୍ୟମ୍ଭାବୀ ।



# ମୁଁ ଓ ସହର

ଶ୍ରୀ ଆଶୀଷ ଚନ୍ଦ୍ର ମହାନ୍ତି
ତୃତୀୟ ବାର୍ଷିକ କଳା (କ)

ଆକାଶରୁ ସବୁ ରଙ୍ଗ ଲିଭିଗଲା ପରେ
ରାସ୍ତାର ଲାଇଟ ସବୁ ଦାନ୍ତ ନିକୁଟନ୍ତି
ଅନ୍ଧାରମାନେ ଆଶ୍ରୟ ନେଲେ
କୋକାକୋଲା ବୋତଲ ଭିତରେ
ନିର୍ଜନ ଏ ରାସ୍ତାର ଟୁଣ୍ଡରେ
ସମ୍ପୂର୍ଣ୍ଣା ଚୁପ୍‌ଚାପ୍ ଶୋଇ
ନାନାବାୟା ଗୀତ ଗାଏ
ହାତୀ ଦେବ, ଘୋଡ଼ା ଦେବ
ଆଉ ଇମିତି କେତେ କ'ଣ ... ...

ସେ ସହରେ ମୁଁ ସ୍ୱଧର୍ମୀ ପ୍ରଜା
କେଉଁ ଏକ ଗତାୟୁ ଦିନର
ସେ ସହରର ଫୁଟ୍‌ପାଥରୁ
କ୍ଷୁଦ୍ରଢ଼ ଗୋଟାଇ ଗୋଟାଇ
ମୋ ଜୀବନର
ଯାଯାବର ଡାଏରୀ ସବୁ
ଭିଜୁଥିଲେ କା' ଆଖି ଲୁହରେ

ମୁଁ ଏଠି, ଏହି ସହରରେ
ଶ୍ରାବଣୀ ଦେଇଛୁ ଚିଠି
ଶାମୁକାର ଲଫାଫାରେ ଭରି
ମମତାର ଅନେକ ସ୍ୱାକ୍ଷରେ
ମତେ ଏଠି ଭଲ ଲାଗେ ନାହିଁ
ଚାଲ ଯିବା ମେଘ ରଜା ଘରେ ...

# ସଂଜ୍ଞା ଗୋଟିଏ ରାତ୍ରିର

ଶ୍ରୀ ସୁଦର୍ଶନ ଦାଶ
୨ୟ ବାର୍ଷିକ (କଳା)

ଏ ରାତିର ସଜ୍ଞା ମୁଁ ପଢେନା
ପୂର୍ଣ୍ଣିମାର ଧବଳ ଜ୍ୟୋତ୍ସ୍ନାରେ
ଅଗଣିତ ତାରକାର ମହୋତ୍ସବ ତଳେ ।
ଲେଖେନା ମୁଁ ସଂଜ୍ଞା ପୁଣି
ଧା'ର ସେଇ କୃଷ୍ଣାଙ୍ଗ କାଳରେ ।

ମୁଁ ଖୋଜଇ ସଂଜ୍ଞା ଯା'ର
କେଉଁ ଏକ ଅନଳ ଶିଖାରେ
ଯେ ଅନଳ ଦଗ୍ଧପାରେ ଖାଲି
ମୋ ଅନ୍ତରେ ଅନନ୍ତ ଦହନ ।

× × ×

ତଥାପି ଆସିବ ରାତି
ଏ ସଂଜ୍ଞାର ରୂପ ବଦଳିବ
ତଉଳିବ ନିଜକୁ ମୁଁ
ରାତିର ଏ ଅନ୍ଧକାର ସାଥେ ।

ହୃଦୟେ ମୋ ତୋଳିବ କୋଣାର୍କ
କିନ୍ତୁ ତା'ର ମୁଣ୍ଡି ନ ମରୁଣୁ
ଧରମା ତ ଦେଇଥିବ ଲମ୍ଫ
କେଉଁ ଏକ ଅତଳ ସାଗରେ ।

# ଏକ ସ୍ୱପ୍ନିଳ ସନ୍ଧ୍ୟାରେ

ପ୍ରମୋଦ ଚନ୍ଦ୍ର ପଟ୍ଟନାୟକ
୨ୟ ବାର୍ଷିକ (କଳା)

କେଉଁ ଏକ ସ୍ୱପ୍ନିଳ ସଂଧ୍ୟାରେ —
ମୋର ସେଇ ସ୍ୱପ୍ନ ଓ ପ୍ରେମଗୁଡ଼ା
ଖଂଡ ହୋଇ ପଡ଼ିଯାଇଥିଲା
କେଉଁ ଏକ ଅଜଣା ବାଟରେ —

କେଂଟ୍ଏ ପକ୍ଷୀ ଆସି
ସବୁ ନେଇ ଉଡ଼ିଗଲେ

ସେମାନଙ୍କ ଆଖିରେ ଖାଲି
ମୋ ସ୍ୱପ୍ନଗୁଡ଼ା ମାଡ଼ିବସିଥିଲା
ସେମାନଙ୍କ ଡେଣାରେ ମୋର
ପ୍ରେମଗୁଡ଼ା ଝୁଲୁଥିଲା...

ଓହଃ - କେଉଁଆଡ଼େ...କେଉଁଆଡ଼େ...ଓହଃ କେଉଁଆଡ଼େ
ଉଡ଼ିଗଲେ ସେମାନେ ?

ମୁଁ କ'ଣ ଜାଣିପାରେ ?
ସତେ କ'ଣ ଫେରିବେ ସେମାନେ

ମୋର ସେଇ
ସ୍ୱପ୍ନ ଓ ପ୍ରେମ ଧଣ । ?

# ସକାଳେ ଏବଂ ସନ୍ଧ୍ୟାରେ

ଶ୍ରୀ ସୌରଜିତ ଦାସ
୩ୟ ବାର୍ଷିକ (କଳା)

ଟ୍ରେନ ଯାତ୍ରୀ । ରବି ଭୋର ହୁଏ ଏକ ଗ୍ରାମ ଷ୍ଟେସନରେ,
ମାଟି ପାତ୍ରରେ ଚା' ଆଣିଦିଏ ଅଦ୍ଭୁତ ଆସ୍ୱାଦ ।
ଅନେକ ଦେଶରେ ମଧ୍ୟ ନୂତନ ବର୍ଷାରେ,
କ୍ଷେତ୍ର ଭରି ଦେଖାଦିଏ ନୂତନ ଫସଲ,
ଆଶ୍ୱାସରେ କୃଷୀ ମନ ଭରି ଉଠେ,
ବଞ୍ଚିଯିବ ଗଲ୍ପ ସନ ପରି,
ପାରିବ ବଞ୍ଚେଇ ଅଗଣିତ ଦେଶର ସନ୍ତାନେ ।
ସାରା ଭୂମି ପରେ ରଙ୍ଗ ମାଟି ହସେ;
ଖରା ବର୍ଷା ଝଲକ ଝଲକ,
ଧାନଟି ଭଲରେ କଣ୍ଠେ ଆଲୋକ ଏବଂ
ଗ୍ରୁପ୍ୱାର ଖେଳରେ । ସହସା ଖବର—
ବିଲୁଆଖାଇର ବନ୍ଧ ଭଙ୍ଗି ଭାସିଛି ଗ୍ରାମ, ପ୍ରାନ୍ତର;
କେତେ ହଜାର ଏକର କର୍ଷିତ ଭୂମି
ଜଳରେ ଚଳିକାମୟ, ଡୁବିଅଛି ବସ୍ତି ଘରଦ୍ୱାର ।
କୃଷୀର ମୁହଁଟି ମୁହୂର୍ତ୍ତେ ମଉଳି ପଡ଼େ
ଶୁଣି ସେ ସମ୍ବାଦ । ପୁଣି ମାଟିପାତ୍ର
ଚା'ରେ ଚୁମ୍ବନ, ଏଥର ବିସମ୍ବାଦ ।
ସକାଳେ ସୁଖର ଛବି, ସନ୍ଧ୍ୟାରେ ବିଷାଦ !

# ଦେବ ନା ମାନବ

ଶ୍ରୀ ବିଭୂତି ଭୂଷଣ ହରିଚନ୍ଦନ
୨ୟ ବାର୍ଷିକ (କଳା)

ପାଇ ବୁଦ୍ଧ ରଙ୍ଗୀନ୍ ମାନବ ଜୀବନ,
କି କାରଣେ ତ୍ୟାଗ କଲେ ରାଜସିଂହାସନ ?
ରଖି ନ ପାରିଲା ତାଙ୍କୁ ରମଣୀ ରତନ,
ବାନ୍ଧି ନ ପାରିଲା ତାଙ୍କୁ ପୁତ୍ରର ବନ୍ଧନ ॥
ଦେଖି ଜନତାର ଦୁଃଖ,
ତ୍ୟାଗ କଲେ ନିଜ ସୁଖ ॥

ରାଜକୁଳେ ଜନ୍ମ ହୋଇ କୌଶଲ୍ୟା ନନ୍ଦନ,
କପାଇଁ ଚଉଦ ବର୍ଷ ବୁଲିଲେ ଅରଣ୍ୟ ?
ରାଜ୍ୟ ମୋହ ତାଙ୍କ ହୃଦେ ନ ପାଇଲା ସ୍ଥାନ,
ନ ପାରିଲା ବାନ୍ଧି ତାଙ୍କୁ ଜାନକୀ ଆହ୍ୱାନ ॥
ପିତା ସତ୍ୟ ପାଳିବାକୁ,
ସ୍ତ୍ରୀ ସହ ଚଳିଲେ ବନକୁ ॥

ରକ୍ତ ମାଂସ ହାଡ଼େ ଗଢ଼ା ମାନବ ଶରୀର,
ପାଷାଣେ ନିର୍ମିତ କି ଯୀଶୁଙ୍କର ଦେହ ?
କ୍ରୁଶ ବିଦ୍ଧ ଯୀଶୁଙ୍କୁ ନ ଦେଲା ଆଘାତ,
କଦାପି ତ, ସେ ହୋଇ ନାହାନ୍ତି ବ୍ୟଥିତ ॥
ଦେବାକୁ ଉଚିତ ଶିକ୍ଷା
ମାଗିନେଲେ ସବୁ ଭିକ୍ଷା ॥

ଦେଖି ଲୁହ ଭାରତର ଜନନୀ ନୟନେ,
କରିଗଲେ ଗାନ୍ଧୀ ସଂଗ୍ରାମ ମଣ୍ଡନେ ॥
ଶସ୍ତ୍ର, ତଲୁଆରର ନ ଥିଲା ପ୍ରୟୋଜନ,
ଦେଇଗଲେ "ସତ୍ୟାଗ୍ରହ" ଆଉ "ଅନଶନ" ॥
ସ୍ଥାପିବାକୁ ନୂଆ ଧର୍ମ,
କଲେ ଅହିଂସା ସଂଗ୍ରାମ ॥

ପୁତ୍ରକୁ ଛାଡ଼ିଦେଇ ମରଣ ଦୁଆରେ,
ଯାଇପାରେ କି ପିତା ଅନ୍ୟ ସାହାଯ୍ୟରେ ?
ଶୁଣିଥିଲେ "ଗୋପବନ୍ଧୁ" ଶତ ପୁତ୍ରର କ୍ରନ୍ଦନ,
କର୍ଣ୍ଣେ ନ ପଶିଲା ନିଜ ପୁତ୍ରର କ୍ରନ୍ଦନ ॥
ମନ୍ତ୍ରୀ ରହି ଧର୍ମ୍ମ କର୍ମେ,
ପୁତ୍ରେ ଭେଟିଲେ ମରଣେ ॥

# ଅସହାୟ ନାବିକ

ଶ୍ରୀ ପ୍ରକାଶ ଚନ୍ଦ୍ର ବାହିନୀପତି
୨ୟ ବାର୍ଷିକ (କଳା)

ନଈରେ ନଈଏ ପାଣି
ମୋତେ ନାଆ ବାହି ଜଣାନାହିଁ
ହାଇ ··· ନଈରେ ନଈଏ ପାଣି ।
ନାଆ ମୋ ଉଦର
କାଠଟି ପୋକର
କୁହ ? କପର ବାହିବି ତରି ।
ନାଆଟି ମୋର ଲୋ ସ୍ରୋତ ଅନୁକୂଳେ
ଧାଇଁଯାଏ ଅତି ଖରେ
କୁହ ନାଆ କି ମୁଁ ବାହି ପାରେ ?
ଦୂର ଦିଗବଳୟ ବରଷା ବରାସି
ଘୋଟି ଆସିଲାଣି ଡେଣେ
ପ୍ରଭୁ— ସାଥୀହୀନ ମୁହିଁ ଜଣେ ।
ନାଆଟି ମୋର ଲୋ ନଦୀକୁ ଡେଇଁଗି
ଏବେ— ପଶିଲାଣି ପାରିବାରେ
କୁହ ? କପରି ବାହିବି ବାରେ ।

ବୁଦ୍ଧି ମୋ ହଜିବ, କଥା ସରିଯିବ
ଆଉ ଦେଖିପାରିବ କି ତାରେ !
ନାଆ କି ମୋ ଆଉ ଚଳେ ।
ପ୍ରଭୁ ଦୟାମୟ ତୁ ଅଟେ ସହାୟ
ଦୁଃଖରାଶି ମୋର ହେଉ ହେ ବିଲୟ
ଆଉ— କୂଳର ମୁଁ ସନ୍ଧି ପାଏ ।

# ବ୍ୟତିକ୍ରମ

ମହୀନ୍ଦ୍ର ମୋହନ ସାହୁ
୨ୟ ବାର୍ଷିକ (କଳା)

ଘୂମନ୍ତ ଏ ଦିଗ୍‌ବଳୟ କୋଳେ
ହେ ସବିତଃ ଅସ୍ତମୁଖୀ ଅନ୍ତିମ ବେଳାର
ଆବର୍ତ୍ତନେ ଅଭିସାର ରଚି ନିତି ଛଳେ
ସ୍ୱଗତନୁ ଆତ୍ମହୂତି ଦେଇ ନୂତନ ସଞ୍ଚାର ।
ଚିର ସତ୍ୟ ଯଦି ଏହା ତେବେ କିମ୍ପା ପୁଞ୍ଜିଭୂତ ଦୁଃଖ ଅବସାଦ
କ୍ଳାନ୍ତିଭରା ଏ ଜୀବନ ତନ୍ତ୍ରେ ତୋଳୁଅଛି ମୃତ୍ୟୁର ଝଙ୍କାର
ଅତୃପ୍ତ ଏ ଆତ୍ମା ଆଉ ଶାନ୍ତିହୀନ ଭାଗ୍ୟ ସୂଚୀପତ୍ରେ
ଲେଖା ନାହିଁ ତେବେ କି'ଣ "ଦୁଃଖ ପରେ ସୁଖର ସଂଚାର" ?
ସ୍ରଷ୍ଟା ତବ ସୃଷ୍ଟି ଧର୍ମ ନୁହେଁ ଏ କି ମହା ବ୍ୟତିକ୍ରମ ?
ଅନନ୍ତ ବୈଚିତ୍ର୍ୟ ରାଜି ନିର୍ଦ୍ଦେଶେ ଯା' ଚିତା ଅହର୍ନିଶ
କୁଣ୍ଠିତ, କୁଟଣ କମ୍ପା ରେଣୁ ସମ ସେହି ଶାନ୍ତ ଦାନେ
ମୁଁ ଯେବେ ତୁମରି ସୃଷ୍ଟି, ମପାର୍ଥେ କି ଭିନ୍ନ ତବ ରୁଚି ?
ଅସ୍ତମିତ ଜୀବନ ପ୍ରଦୀପ ଲିଭିଗଲେ ଆୟୁଷର ଶ୍ରମ ବାତ୍ୟା ଫଳେ
ଲୋଡ଼ିବନି ଭିକ୍ଷା ତବ-ଜଳଦାନ ତୃଷ୍ଣା ଉପକଣ୍ଠେ
ଗାଇବନି ଅତୃପ୍ତ ମୋ ଅତ୍ମା ପର ପାରେ ସନ୍ଦୃଷ୍ଟି ସ୍ରଷ୍ଟାର ସୃଜନେ
ଜନ୍ମିବନି ଆନ ବିଶ୍ୱଜନେ ଶ୍ରେଷ୍ଠ ବୋଲି ଏହି ସୃଷ୍ଟି ଗାଇ ମୁକ୍ତ କଣ୍ଠେ ।

ରଞ୍ଜନ କୁମାର ମହାପାତ୍ର
ପ୍ରଥମ ବର୍ଷ (କଳା)

# ଯବନିକା ତଳ ସ୍ମୃତିର

ଜୀବନେ ପ୍ରଥମେ ଯେବେ ସକାଳର ପ୍ରଥମ ସ୍ୱାକ୍ଷର
ମୋ ଅଙ୍ଗନେ ଆଣିଦେଲା ବଞ୍ଚିବାର କାମନା ସଂଭାର
ସେ ସକାଳେ ମୁଁ ଶୁଣିଥିଲି ଅନାମିକା ପକ୍ଷୀର କାକଳି
ସୁରଭିତ ପୁଷ୍ପଗୁଚ୍ଛ, ମାଙ୍ଗଳିକ ସ୍ୱରର ଲହରୀ ।

*　　*　　*

ଅନେକ ଫଗୁଣ ରଙ୍ଗ ମୋ ଆଖିକୁ କରିଲେ ରଙ୍ଗୀନ
ଅନେକ ମାଦକଭରା ସପନ ବି ମୋ ଆଖିରେ ଭରିଲେ ଅଞ୍ଜନ
ଆକାଶ ହସିଲା ଦେଖି ମୋ ଜୀବନ ନୂତନ ପର୍ଯ୍ୟାୟ
ବିକ୍ଷିପ୍ତ-ଜୀବନ ତଳେ ଯାହା ଏକ ନୂତନର ଅଧ୍ୟାୟ ।

*　　*　　*

ସେ ସକାଳ ଗଲା ଚାଲି ବକ୍ଷେ ଦେଇ ଅନେକ କମ୍ପନ
ମୁଁ ଜଳିଲି ଦୀପ ସାଜି, ମରଣରେ ସତ୍ୟ ଆଲୋଡ଼ନ
ମୃତ୍ୟୁରେ ନାହିଁଛି ଭୟ, ଯେହେତୁ ମୁଁ ମମତା ବନ୍ଧନ
ଅବଶୋଷ ଖାଲି ଯାହା ପାଇଲିନି "ଅନୁରାଗ ଭୂମ" ।

*　　*　　*

ସେ ଶେଷ ସକାଳ ସ୍ମୃତି ଭୁଲିବାର ବ୍ୟର୍ଥ ଚେଷ୍ଟା ପରେ
କ୍ଷତ-ମନ ପୁଣି ଜଳେ ରୂପ ନେଇ ସହସ୍ର ଆକାରେ ।

## ଅତୀତ ଓ ମୁଁ

ପ୍ରଭାକର ସାହୁ
ଦ୍ୱିତୀୟ ବାର୍ଷିକ (କଳା)

ହେ ଅତୀତ ...
ତୁମେ ଯେବେ ଲୁଚିଯାଅ—
ବିସ୍ମୃତି ଗର୍ଭରେ ଚିରଦିନ ପାଇଁ
ତୁମେ ଯେବେ ମରିଯାଅ
ଶ୍ରାବଣୀର ବର୍ଷଣୀ ମୁଖରେ
କୃଷ୍ଣ ବାରିଦ କୋଳେ
ଘନ ଘୋର ତିମିରରେ—
ତୁମ ସତ୍ତା ହଜିଯାଏ ଯେବେ
ତଥାପି ମୁଁ ପାରିବିନି ଭୁଲି
ତୁମେ ମୋର ସ୍ମୃତିର ସ୍ମାରକ
କୋଟିଏ ଯୁଗର ... ...
ଲକ୍ଷ ଆଶା ଲକ୍ଷ ମନ ନେଇ
ତୁମେ ଯେବେ ଭାସିଯାଅ
ମୋ ଜୀବନ-ଯମୁନାରେ
ନେଇଯାଅ ଯେତେ ସବୁ
ସୁଖ - ଦୁଃଖ ହସ-କାନ୍ଦ
ଯେତେ ମାନ ଯେତେ ଅଭିମାନ
ତଥାପି ମୁଁ ଭୁଲିବିନି
ତୁମେ ମୋର ସ୍ମୃତିର ସନ୍ତକ
ଚିରକାଳ ପାଇଁ ।

## —★ ଛ ଳ ନା ★—

ସୁରେନ୍ଦ୍ର ତ୍ରିପାଠୀ
ତୃତୀୟ ବାର୍ଷିକ କଳା

ଛଳନା କି ଜୀବନରେ କ୍ଷଣିକା ଚପଳା
ସନ୍ଦେହର ଜଳଦ ଉପରେ ? ..
ଦେଇଯାଏ ଜୀବନରେ ଅଲିଭା ଏ ଦାଗ
ଆଘାତ, ପ୍ରତୀକ୍ଷା, ଆଶା ଉଏଁ ମୋଅନ୍ତରେ ।
ପ୍ରଣୟ ପ୍ରଦୀପ ପରେ ଢ଼ାଳେ ଯିଏ ସ୍ନେହର ତଇଳ
ସମାଜର ଜଟିଳ ସଂସ୍କାରେ
ଛଳନାର ପାରାବାରେ ଆଶାର ତରଣୀ
କମ୍ପା ଭାସି ଆସେ ଦୂରୁ ଦୂରେ ।
କଳ୍ପନାର ଫୁଲ ମୋର ଯାଇଛି ମଉଳି
ନାହିଁ ଶକ୍ତି ଧରବାକୁ ମରୀଚିକା କରେ
ଆଶାର ସଉଧ ଧୀରେ ଯାଉଛି ଭୁଷୁଡ଼ି
ଆଘାତର ଦାଗ ଦିଶେ ଅନ୍ତରେ ବାହାରେ ।
ମୁଁ ଏହାକୁ କହେନା ଛଳନା,
କମ୍ବା ଅଭିମାନ ବୋଲି ବୁଝିବ ପାରେନା
ବଦଳୁଚ ଦୁନିଆଁଟା ବଦଳୁ ସେ ଅଭିସାର ନେଇ
ମୁ ରହିବ ଏକା ଏକା ନିହାତି ଏକଲା
ସବୁ ଦାଗ ସବୁ ସ୍ମୃତି ହୃଦୁଁ ପୋଛି ଦେଇ ।



# ପଥହରାର ସଂଗୀତ

ଶ୍ରୀ ଆର୍ତ୍ତଭଞ୍ଜନ ମହାନ୍ତ
ପ୍ରାକ୍-ବିଶ୍ୱବିଦ୍ୟାଳୟ (କଳା)

ଘରୁ ଆସିଥିଲି ଦହି ମାଛ ଖାଇ
ଦେଖିଥିଲି ପୂର୍ଣ୍ଣ କଳସି
ବିଦେଶୀ ହୋଇ ମୁଁ ବିଦା ହେଲି ଘରୁ
ଥିଲେ ଯେତେ ମା' ମାଉସୀ । ୧

ଶୁଭ ମନାସି ମୁଁ ବିଳାସୁଣୀ ପଦେ
ଜଣାଇଥିଲି ପ୍ରଣତି
ସତେ ମା' ମୋତେ ସାହା ହେବୁ କାଳି;
କରିବାକୁ ଅଗ୍ରଗତି । ୨

ଲମ୍ବା ବସ୍‌ର ଗୁରୁ ଗର୍ଜନରେ
କମ୍ପିଥିଲି ମୋର ହିଆ
ଆବାକାବା ହୋଇ ସମସ୍ତଙ୍କୁ ଚାହିଁ
ହେଲି ବସ୍ ମଧ୍ୟେ ଠିଆ । ୩

ଘଣ୍ଟାକ ଭିତରେ ପହଞ୍ଚିଲି ଆସି
ସୁଦୂର ଓଡ଼ିଶା କଟକେ
ଉତ୍ତରି ବସ୍‌ରୁ ରିକ୍‌ସାରେ ଚଢ଼ି
କେତେ ନୂଆ କଥା ଦେଖେ । ୪

ଆହା ! କି ସୁନ୍ଦର କେଡ଼େ ମନୋହର
ଦେଖରେ ଭୁବନେଶ୍ୱର
ବିଜୁଳି ବତୀର ସୁବର୍ଣ୍ଣ ଝଟକ
ବହିଗଲା ଝର ଝର । ୫

ଦେବ ଦିବାକର ଖଣ୍ଡଗିରି ଶିଖେ
ଲୁଚିଲେ ସେଦିନ ପାଇଁ
ମାନବ ବିଜୟୀ ଶଶଧର ଆସି
ନଭେ ହେଲେ ଗୃହିଁ ଗୃହିଁ । ୬

ସେତେବେଳେ ଥିଲି ଚୌଛକ ଉପରେ
ଦେଖିଲି ଅପୂର୍ବ ଶୋଭା
ଭାବୁଥିଲି ମନେ ବିରାଟ ସମସ୍ୟା
କେଉଁ ପଥ ଦେଇ ଯିବା । ୭

ଶ୍ରେଷ୍ଠ, ଶ୍ରେଷ୍ଠତର ଖରାପ ଉତ୍ତମ
ଏ ହେଲା ରାସ୍ତାର ନାମ
ମୁଁ ତ ନବାଗତ ଭୁବନେଶ୍ୱରରେ
ମୁଁ ବା କରିବି କି କାମ । ୮

ବର୍ଷକ ଯାକ ମୁଁ ମାର୍ଜାର ରକମ
ବୁଲିଲି ଏଠୁ ସେଠାକୁ
ଶେଷେ କ୍ଳାନ୍ତ ହୋଇ ସଂଜ୍ଞାକୁ ହରାଇ
ଖସାଇ ଦେଲି ଗୋଡ଼କୁ । ୯

ପଥହରା ହୋଇ ଗୋଡ଼କୁ ଖସାଇ
ସାରିଲି ଗୋଟିଏ ବର୍ଷ
ଶେଷ ଗୃହଆଡ଼େ ପରିଚିତ ହେଲି
"ମୁଁ ଏକ ପଥହରା ପଥିକ" । ୧୦



# ଅନୁଶୋଚନାର ସୁରଟିଏ

**ଶିବପ୍ରସାଦ ଦାସ**
ପ୍ରଥମ ବାର୍ଷିକ (କଳା)

ଅନେକ ଫଗୁଣ ବି'ତ ପଙ୍ଗୁ ହୋଇ ମୋ ଝର୍କା କଡ଼ରେ
ଢୁମେଇ ମାରନ୍ତି ହାଇ, ହାୟଃ ମୁହିଁ ସେମାନଙ୍କୁ କେହ୍ନେ;
ପ୍ରଭୃତ କ୍ଷମତା ଦିଏ, ହସି ହସି ସମ୍ଭାଷଣ କରେ
ସତର୍କରେ ଫୁସୁଲାଏ, ବ୍ୟର୍ଥତାର, ଗ୍ଲାନିର ପ୍ରସଂଗ
ବାଡ଼ି ମୁକାବିଲା କରେ ବ୍ୟସ୍ତ ରହି ଅନ୍ୟ ଉଦ୍‌ଯୋଗରେ
ଭାଗ୍ୟହତ ଦୋଷିପରି— ମୁଁ କାକୁସ୍ଥ; ଦୁଃଖର ଯନ୍ତ୍ରଣା
ଅଂଧାର ନିଭେଇଯାଏ— ଆକୁଳତା, ଅଶେଷ ଯାତନା
ଗତି ସମାଧିସ୍ଥ କରେ, ସ୍ପନ୍ଦମାନ ମନ ପରଦାରେ
ସିଏ ପୁଣି ରଙ୍ଗ ନେଶେ ବିହ୍ୱଳିତ ପାର୍ଥିତ ସ୍ମୃତିରେ ।।
ମୁଁ କିପରି ବଖାଣିବି କ୍ରୀତଦାସ ମୋ ଜୀବନ ଗାଥା
ପିଟିର ଶୋଣିତ ଧାର ବିଫଳତା ମୃତ ଫାଲ୍‌ଗୁନର
ଓ କିପରି ଅଂଧ ହୋଇ ଦର୍ପଣର ନାନ୍ଦ ସଜାଡ଼ିବି
ଅମାବାସ୍ୟା ଚନ୍ଦ୍ର ଦେଖି— ନିଜ ମଧ୍ୟେ ସ୍ତୁତିଗାନ କରି
ଆପଣାର ଗୁଣମାନ ନିଜସ୍ୱଏଁ ଜାହିର କରିବି— ?
ଏ ଖାଲି ଫାଲ୍‌ଗୁନ କଥା— ଅସହାୟ ମୋ ଜୀବନ କଥା
ଆକସ୍ମିକ ସ୍ପର୍ଶ କରେ, ଚମତ୍କାର ଝରକାରେ ମୋର—
ସଂଦେହ ଓ ଆଶଂକାରେ ମୁହୂର୍ତ୍ତର ସମୁଦ୍ର ମନ୍ଥିରେ
ପବନର ଗତି ଛୁଏଁ — ଘାଟିକ୍ଷ୍ୱାସ ବ୍ୟର୍ଥ ପ୍ରୟାସର
ବନ୍ଦୀଏ କରୁଣା ଗୁହେଁ— କୁସୁମିତ ତାହାର ଶାଖାର
ବିଚରି ମୁଁ ଫାଲ୍‌ଗୁନର ଚିର ହାହାକାରେ
ବିଗତ ରୌଦ୍ରର ତାପେ ଜାଳି ଜାଳି ତାରୁଣ୍ୟକୁ ମୋର
ପଛରେ ପୋଡ଼ିଛି କେତେ ଜଣାଶୁଣା ଚନ୍ଦ୍ର ଓ ସନ୍ଧିର
ଅବିଶ୍ୱାସ, ବିଦ୍ରୁପକୁ ମାନା ସାଥେ ବେଖାତିର କରି
ଫାଲ୍‌ଗୁନର କଥା ଶୁଣେ ବିଡ଼ମ୍ବିତ ଏ ଝର୍କାରେ ମୋର ।

# ଦୁଇଟି ମୁହୂର୍ତ୍ତ

**ଲକ୍ଷ୍ମୀଧର ବେହେରା**
ପ୍ରାକ୍-ବିଶ୍ୱବିଦ୍ୟାଳୟ (କଳା)

ଏ ଗୋଟିଏ ମୁହୂର୍ତ୍ତ
ଅମିୟ ଭୁବନ ତେଜି
ଏ ମର ସଂସାରେ
ପାଦ ଦିଏ ଯେତେବେଳେ
ନବାଗତ ଶିଶୁ !

ଜଳିଉଠେ ଜୀବନ ପ୍ରଦୀପ
ଖେଳିଯାଏ ଆନନ୍ଦ ଲହରୀ
ମଧୁମୟ ହସ ଫୁଟେ ସବୁରି ମୁଖରେ
କିନ୍ତୁ କାନ୍ଦଥାଏ ଏକା ସେହି
ନବୀନ ପଥିକ
ପାଇ ଏହି ସଂସାରର
ଅଜଣା ପରଶ;

ଆଉ ଗୋଟିଏ ମୁହୂର୍ତ୍ତ
ଜୀବନ ପ୍ରଦୀପ ସେଦିନ
ହୁଏ ନିର୍ବାପିତ,
କଳୁଷିତ ଭୂମି ତେଜି
ଚିରନ୍ତ ରାଇଜେ
ଚାଲିଯାଏ ଯେତେବେଳେ
ଆତ୍ମା ବିହଙ୍ଗମ;

ଘୋଟିଯାଏ ବିଷାଦ କାଳିମା
ଖେଳିଯାଏ ଶୋକ ଛାୟା
ଝରଇ ଲୋତକ ଧାର
ସବୁରି ନୟନୁ ।
କିନ୍ତୁ, ହସିଥାଏ ଏକା ସେହି
ବିଦାୟୀ ପଥିକ,
ଅମର ଭୁବନୁ ପାଇ
ଅମିୟ ପରଶ ।

# ଅମୃତ-ଦୃଷ୍ଟି

ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ
ପ୍ରଥମ ବର୍ଷ (କଳା)

ତା ଆଖିର ଗୃହାଣୀରେ, ଦୁଇବିନ୍ଦୁ ଲୋତକରେ,
ଭୁଟିଛି ଲୌହ କପାଟ, ଫିଟିଛି ଶାସନ-ଆଟ,
ତା ଆଖିର ପଦ୍ମଫୁଲ ପ୍ରୀତିର-ସକାଲେ,
ସେହି ଦୃଷ୍ଟି ମରଣକୁ ଅମୃତେ ପଖାଲେ ।

★

ମୂକ କଣ୍ଠେ ଫୁଟେ ଭାଷା, କହିଛି ପ୍ରାଣ ପିପାସା,
କୋଟି ପ୍ରାଣ ଜାଗଉଠେ, ବଞ୍ଚିବାର ମହାମନ୍ତ୍ରେ,
ଯାହା ଦିନେ ଭରି ଥିଲା ମରଣର ଗରଲେ,
ସେହି ଦୃଷ୍ଟି ମରଣକୁ ଅମୃତେ ପଖାଲେ ।

★

ଜୀବନର ପ୍ରୀତି-ସ୍ୱପ୍ନ ହଜିବାରେ ଥିଲା ମଗ୍ନ,
ଫୁଟିଅଛି ବାସ୍ତବରେ, ନନ୍ଦନର ଉଦ୍ୟାନରେ,
ମରୁର ମଳୟ ପ୍ରାୟ ନାଚେ ପ୍ରୀତି ହିଲ୍ଲୋଳେ,
ସେହି ଦୃଷ୍ଟି ମରଣକୁ ଅମୃତେ ପଖାଲେ ।

* ଏକ ପୁଣ୍ୟାତ୍ମାଙ୍କ ପ୍ରତି ସ୍ମୃତି-ଶ୍ରଦ୍ଧାଞ୍ଜଳି ।




# ପ୍ରଳାପ

ବାର୍ଦ୍ଧକ୍ୟରେ ଅଛି ସତରେ ଗୋଟାଏ ଯନ୍ତ୍ରଣା । ସେ ଯନ୍ତ୍ରଣା ମୃତ୍ୟୁ ପାଇଁ ନୁହେଁ, ବରଂ ଯୌବନକୁ ପୂର୍ଣ୍ଣ ଉପଭୋଗ କରିବାର ସୁଯୋଗରୁ ବଞ୍ଚିତ ହେବା ଦୃଷ୍ଟିରୁ । ଏ ହସ-ଖେଳର ଦୁନିଆର ଅଭିଧାନରେ ଏହିପରି ଶବ୍ଦଟାଏ ନ ରହିବା ଭଲ ।

ମିଷ୍ଟର କର ଯେଉଁଦିନ ଠାରୁ ଏହି ଧାରଣାର ପୃଷ୍ଠ-ପୋଷକ ହେଲେ ସେହିଦିନରୁ ସେ ଅଗ୍ନିସଂଯୋଗ କରି ନଷ୍ଟ କରିଦେଲେ ତାଙ୍କର ଜାତକଟି । କାରଣ ଜାତକ ଭଳି ଖଣ୍ଡେ ମୂଲ୍ୟହୀନ ତାଳପତ୍ର, ଆଉ ତା ଉପରେ ଗାଁ ଅବଧାନର କେତୋଟି ଲେଖାର ଗୁରୁତ୍ୱ ତାଙ୍କର ଦେହକୁ ୫୦ଟି ଚାବୁକ ଦେଇ କ୍ଷୀଣକାୟ କରିଦେବ— ଏହା ସେ ସହ୍ୟ କରିପାରି ନ ଥିଲେ ।

ତାଙ୍କର ମନେଅଛି, ସେ ଏହି ଜାତକଟିର ପଚାଶଟି ଚାବୁକ୍ ପ୍ରହାରକୁ ହେୟ ମନେକରିଥିଲେ । ସେତେବେଳେ ତାଙ୍କ ଦେହର ଉଷ୍ମତା, ମନର ସୁନେଲି ରଙ୍ଗ ଓ ପ୍ରାଣର ରକ୍ତିମା ଥିଲା ବେଶ୍ ଜୀବନ୍ତ । ଜୀବନ ବୀଣାର ପ୍ରତିଟି ତନ୍ତ୍ରୀ ହୋଇ ଉଠିଥିଲା ଚଳଚଞ୍ଚଳ, ସତେଯେପରି ଅଳସୀ ଝରଣାଟି ବନ, ପାହାଡ଼, ଗାଁ ଡେଇଁ ମାଡ଼ିଯାଉଥିଲା ଶବ୍ଦ ଶବ୍ଦ ମାଇଲ ଭୂମି ଉପରେ ନଦୀ ହେବାର କଳ୍ପନା ନେଇ ।

**॥ ପରମାନନ୍ଦ କର ॥**
ପୁରାତନ ଗୃହ

ନା · ସେ ବୃଦ୍ଧ ନୁହନ୍ତି । ଏ ମାନବ କେବେ ବୃଦ୍ଧ ହୋଇପାରେନା, କୃଷ୍ଣଚୂଡ଼ାର ତାରୁଣ୍ୟ କେବେ ଝରିଯାଇ ପାରେନା । ବେଶ୍···ତେବେ ସେ ଆଜି ଅଳସ ଅଜଗର ନ ହୋଇ ଲଘୁପକ୍ଷ ପ୍ରଜାପତି ହେବେ···ବିନ୍ଦୁ ନ ହୋଇ ସିନ୍ଧୁ,

ହେବେ···ସସୀମ ନ ହୋଇ ଅସୀମ ହେବେ । ପୁନରାୟ ଫେରିପିବେ ପଛକୁ, ସେହି ଅତୀତର ଅଭୁଲା ସ୍ମୃତିକୁ ପାଥେୟ କରି ଯାଇବେ ଶାନ୍ତି···ହସିବେ ତୃପ୍ତିର ହସ । ଶାସ୍ତ୍ର, ପୁରାଣ, ଗୀତା ଓ ଭାଗବତକୁ ସେ ମାନିବେ ନାହିଁ । ଯୌବନର ଚପଳତା ବିରୁଦ୍ଧରେ କୌଣସି ଅଭିଯୋଗ ପ୍ରତି ଧ୍ୟାନ ସେ ଦେବେନାହିଁ । ଭୁଲିଯିବେ ଉପନିଷଦର ହିତୋପଦେଶ ଚରୈବେତି···ଚରୈବେତି · ଚରୈବେତି ! !

ତା'ହେଲେ ସତରେ କ'ଣ ଫେରଆସିବ ସେହି ଅତୀତ । ପଚାଶ ବର୍ଷ ବୟସର ମୃତପ୍ରାୟ ବୃଦ୍ଧ କ'ଣ ତିରିଶ ବର୍ଷର ଯୁବକକୁ ରୂପାନ୍ତରିତ ହୋଇପାରିବ ? ? ଶୁଷ୍କ, ନୀରସ, ନିରାଡ଼ମ୍ବର ଜୀବନକୁ ନେଇ ସେ କ'ଣ ପୁଣି ହୋଇପାରିବେ କଲେଜ ଛାତ୍ର । ଚାଳିଶି ପରି ଭାସିଉଠେ ସେହି ଛାତ୍ର ଜୀବନର ମଧୁମୟ ସ୍ମୃତି । ପୂଜାଚୂଡ଼ୀର ସେହି ଶ୍ୟାମାଙ୍ଗୀ ପଲ୍ଲୀର ନଗ୍ନ ବକ୍ଷରେ ନିଜର ଅସ୍ତିତ୍ୱକୁ ହଜାଇ ଦେବାପାଇଁ ସେ କ'ଣ ଉତ୍କଣ୍ଠି ହୋଇପାରିବେ ? ? ?

ମାତ୍ର ଶ୍ୟାମାଙ୍ଗୀ ପଲ୍ଲୀର ହେମାଙ୍ଗୀ 'ଅନୁ' ତାଙ୍କର ଧ୍ୟାନ ଭଙ୍ଗ ଦେଇଥିଲା ସେ ଦିନ । ସଂଧ୍ୟା ପରେ ରାତି·· ରାତୀ ପରେ ପୁଣି ସକାଳ ହେଲେ ବି ସେ ସେହି ରଂଗୀନ ପ୍ରଜାପତିର ମଧୁମୟ ଆକର୍ଷଣରୁ ଦୂରେଇ ଯାଇ ପାରି ନ ଥିଲେ । ଅନୁପମାର ରୂପା-ଲୋକରେ ଝାମ୍ପ ଦେବାର ଅଦମ୍ୟ ପିପାସା ତାଙ୍କ ମନରେ ଜାଗେ । ସେଥିପାଇଁ ଯଦି ପୋଡ଼ଯାଏ ତାଙ୍କର ଚିର ବନ୍ଧମାୟ ପକ୍ଷ···ଜଳଯାଏ ତାଙ୍କର ମୂଲ୍ୟବାନ ଚକ୍ଷୁ··· ଝରିଯାଏ ଭବିଷ୍ୟତର ସମସ୍ତ ହେମରେଣୁ ତଥାପି ସେ ଆଲୋକକୁ ଡେଇଁବେ । ସେହି ଆଲୋକ ପାଇଁ ତାଙ୍କ ଜୀବନ – ପତଙ୍ଗର ଆପାଦମସ୍ତକ ନିଶ୍ଚିହ୍ନ ହୋଇଯାଏ, ତେବେ ବି ସେ ଭ୍ରୂକ୍ଷେପ କରିବେ ନାହିଁ । କାରଣ ସେଥିରେ ସେ ପାଇବେ ତୃପ୍ତି ସେହି ଆଲୋକ ଖେଳରେ ହେବ ତାଙ୍କର ପରିସମାପ୍ତି ।

ମନେପଡ଼େ ସେହି ରାକା ରଜନୀ । ଜ୍ୟୋତ୍ସ୍ନାଲୋକରେ ବିଧୌତ ଧରଣୀ । ବସନ୍ତର ମୃଦୁମଳୟ, ଶୀତ ରାତିର କରକା ପ୍ରାବୃଟରେ ଚଳମାନ ମେଘମାଳା ଓ ନିଦାଘର କ୍ଳାନ୍ତି । ସବୁ ଅପସରିଯାଏ ମଳୟର ମଧୁର ସ୍ପର୍ଶରେ । ତାଙ୍କର ସମସ୍ତ ତାପକୁ ହରଣ କରି ତାଙ୍କଠାରେ ଭରିଦିଏ ପ୍ରାଣ ପ୍ରାଚୁର୍ଯ୍ୟ ··ଆତ୍ମାର ଅନେକ ଇନ୍ଧନ । ସେହି ଗାଁ ଆମ୍ବତୋଟାରୁ ଭାସିଆସେ କୋଇଲିର ପଞ୍ଚମ ତାନ । ଗୃହଆଡ଼େ ଶୁଭିଯାଏ ଯୌବନର କୋଳାହଳ । କକ୍ଷଚ୍ୟୁତା ଅନୁର ଏକାକୀତା ତାଙ୍କ ମନକୁ ଚହଲାଇଦିଏ ସେ ଦିନ । ଚନ୍ଦ୍ରର ସ୍ମିତ ହାସ ସହିତ ତା'ର ରୂପଝରକ ମୁଗ୍ଧ କରେ ତାଙ୍କୁ । ଯଦିଓ ମେତେବେଳେ ତାଙ୍କ ଆଖି ଆଗରେ ଭାସିଉଠନ୍ତି କେତେ ଅପ୍ସରା ରୂପମୂର୍ତ୍ତି···ମିସ୍ ଷଡ଼ି···କୁନ୍ତଳା·· ମୀନା ।

ନା··ନା···, ଏମାନଙ୍କ ଠାରୁ ଅନୁ ଶତଗୁଣେ ଶ୍ରେଷ୍ଠ । ପଲ୍ଲୀମାନସୀ ଅନୁର ଖିଲଖିଲ ହସ ତାଙ୍କୁ ଦେଇଥିଲା ନୂତନ ଆଲୋକର ସଂଧାନ । ସେହି ହସର ଧ୍ୱନିକୁ ସ୍ମରଣ କରି ସେ ହୋଇଥିଲେ ଆତ୍ମବିଭୋର । ସେହି ଆଲୋକର ଜ୍ୟୋତିରେ ସେ ନିଜକୁ ମିଶାଇ ଦେଇଥିଲେ ··· ଯାହାର ବିସ୍ତୃତି ଅନନ୍ତ ଓ ପରିସମାପ୍ତି ସୀମାହୀନ ।

ଅନୁ ତାଙ୍କ ପାଖକୁ ଆଗେଇ ଆସେ । ସେ ଆଉ ନୀରବରେ ପ୍ରତୀକ୍ଷା ନ କରି ତା ପାଖକୁ ଧାଇଁଯାନ୍ତି, ଯେପରି ୧୫୦୦ ମିଟର ରେସ୍‌ରେ ପ୍ରଥମ ହେବାପାଇଁ ଶେଷ ଦୁଇରାଉଣ୍ଡରେ ଦୌଡ଼ାଯାଏ । ହଁ, ହଁ— ସେ ଦୌଡ଼ିବା ଆରମ୍ଭ କରନ୍ତି । ଜଂପ୍ ·· ଲଂଗ୍ · ଆଣ୍ଡ୍ ହାଏ ··

ଅନୁ ଓ ତାଙ୍କର ବ୍ୟବଧାନ ମିଳେଇଯାଏ । ଆଉ କେତୋଟି ମୁହୂର୍ତ୍ତ ପରେ ଅନୁର ଚଞ୍ଚଳ ପାଦ ଦୁଇଟି ଅଟ୍‌କରି ରହିଯାଏ । ସେ ତାକୁ ସାବୁଡ଼ି ଧରନ୍ତି । ସେ ଦୁହେଁ ଆତ୍ମତୋଷରେ ନିଜକୁ ମିଶାଇ ଦିଅନ୍ତି । ହୁଅନ୍ତି ଏକାକାର । ମିଃ କରଙ୍କର ମନେହୁଏ ଅନୁ କେବଳ ଏକ ଆଲୋକର ଶିଖା ନୁହେଁ··· ସେ ନିଜେ ମଧ୍ୟ ଏକ ଅଗ୍ନି ସ୍ତୂପ, ଆଲୋକ ଆଉ ବହ୍ନି··ଆଃ··· !!!

×　　　　　×　　　　　×

ମପେପଡ଼େ ଆଉ ଗୋଟିଏ ଦିନର ଅଭୁଲା ସ୍ମୃତି । ସେହି ବର୍ଷଣମୁଖର ସନ୍ଧ୍ୟା । ସେ ଥିଲେ ରାଜରାସ୍ତାରେ ଏକମାତ୍ର ପଥିକ । ହଠାତ୍ ଖୁବ୍ ଜୋର୍‌ରେ ବର୍ଷା ଆରମ୍ଭ ହୁଏ । କ୍ଷଣିକ ଆଶ୍ରୟ ପାଇଁ ଉଠଯାନ୍ତି ରାସ୍ତା ଧାରର ଘର ବାରଣ୍ଡାକୁ । × × × ଆଉ କବାଟରେ ମୃଦୁ ଆଘାତ ପରେ × × କବାଟ ଖୋଲି ସେ ଆସନ୍ତି × × ଏ ଯେ' ସହପାଠିନୀ ମୀନାକ୍ଷୀ । ବାଃ ତାହାହେଲେ ଆଜି ବର୍ଷା ପାଗରେ ତା ସହ ଗପ କରାଯାଇ ପାରିବ । ଟି' ପାନର ପର୍ବ ପରେ ଗପର ଆସର ଜମିଉଠେ । "ଆରେ ରାତି ୧୧ଟା ହେଲାଣି"— ଫେରଆସିବାର ଉପକ୍ରମ କରନ୍ତି ସେ । କିନ୍ତୁ ମୀନାର ଅନୁରୋଧକୁ କେଜାଣି କାହିଁକି ଉପେକ୍ଷା କରିହୁଏନା ??

ଆକାଶ ବକ୍ଷରେ ଭାସମାନ ମେଘଖଣ୍ଡର ସଂଗ୍ରର ସୁସ୍ପଷ୍ଟ । ସେହି ତମସାଚ୍ଛନ୍ନ ରାତିର ନୀରବ ପ୍ରହରରେ ମୀନା ଢଳପଡ଼ିଥିଲା ତାଙ୍କ କୋଳରେ । ସେ ଆପେ ଆପେ ଧରାଦେଇଥିଲା । ଅନୁ ପରି ତା ପଛରେ ଧାଇଁବାକୁ ପଡ଼ି ନ ଥିଲା । ଚନ୍ଦ୍ରର ଜ୍ୟୋତ୍ସ୍ନା ବଦଳରେ ଫ୍ଲୁରୋସେଣ୍ଟ ବତୀର ଆଲୋକ ଶୁଭ୍ର ମଲ୍ଲିକା ବଦଳରେ ଫ୍ଲାୱାର ଭେସରେ ସଜ୍ଜିତ ପ୍ଲାଷ୍ଟିକ୍ ଗୋଲାପ କଳିକା ।

ହଠାତ୍ ଘରର ବିଦ୍ୟୁତାଲୋକ ଅପସରିଗଲା । ବର୍ଷା ସହ ତମିସ୍ରା ଝରୁଥିଲା ବୋଧହୁଏ ସୁଇଚ୍‌ର ସଦ୍‌ବ୍ୟବହାର କରାଯାଇଥିଲା । ଘନ ଅନ୍ଧକାର ମଧ୍ୟରେ ବି

ଅନ୍ଧାର ଆଲୋକରେ ସେ ନିଜକୁ ପ୍ରଜ୍ଜ୍ୱଳିତ କରିପାରିଥିଲେ । ତଥାପି ଅନ୍ଧକାରର ବି ଏକ ସ୍ୱତନ୍ତ୍ର ସ୍ୱାଦ ଅଛି, ମାଦକତା ଅଛି । ସେ ସିହରି ଉଠିଥିଲେ । ରକ୍ତରେ ତାଙ୍କର କିଛିଟା ଉଷ୍ଣତା × × ×

ଆଉ ଅଳ୍ପ .... ନା, ନା— ସେ କେବେ ହୋଇପାରିବେନି ବୃଦ୍ଧ ! ମଥାର କେଶକୁ କ୍ରିମ୍ ଦେଇ କଳା କରିଦେବ । ପ୍ଲାଷ୍ଟିକ ଦାନ୍ତ ଲଗାଇ ସେ ହେବେ ଯୁବକ । ଜାତକ ତ ଅନେକ ଦିନରୁ ନଷ୍ଟ ହୋଇଯାଇଛି । ତେଣୁ କେହି ତାଙ୍କର ବୟସକୁ କଳିପାରିବେ ନାହିଁ ।

ଯୌବନର ପ୍ରତିଟି ଅହମିକା ତାଙ୍କୁ କରିଦେଇଥିଲା ସ୍ୱାର୍ଥପର । ସେ ଯୁବକ ହେବାକୁ ଗୃହାନ୍ତ । ସେ ପୁଣି ଫେରିଯିବେ ମିସ୍ ପଣ୍ଡା— ମିନାକ୍ଷୀ— ଆଉ ଅନୁ ପାଖକୁ ।

ସେ ଖୁବ୍ ଜୋରରେ ଚିତ୍କାର କରି ଉଠିଲେ । ସିଷ୍ଟର, ସିଷ୍ଟର...... ମୁଁ ... ଯୁବକ ହେବି .....ହଁ, ହଁ .....ମୁଁ ଯୁବକ ହେବି । ମୁଁ ଏହି ବୟସର ମିଠା ବାସ୍ନା ବାରିପାରୁଛି । ...... ଏଇ ମୋର ଅନୁ ମୋତେ ଆଲୋକକୁ ଯିବା ପାଇଁ ଆହ୍ୱାନ କରୁଛି ... ଏଇ ମୀନା ମୋତେ ଅନ୍ଧକାରକୁ ଯିବା ପାଇଁ ଆମନ୍ତ୍ରଣ କରୁଛି ..... ଆକାଶରେ ହସକୁରି ଚନ୍ଦ୍ର ମୋତେ ସ୍ୱାଗତ କରୁଛି ...... ହଁ, ହଁ ... ମୁଁ ଯିବି... ମୁଁ ନିଶ୍ଚୟ ଯିବି ।

"ନୀରବ ରହନ୍ତୁ ମିଃ କର", ବେଶୀ କଥାବାର୍ତ୍ତା କରନ୍ତୁ ନାହିଁ, —

—"ସିଷ୍ଟର ! ସତରେ କ'ଣ ବୟସଟା ବଢୁଛି ?"—ମୁଁ କ'ଣ ସତରେ ରୋଗୀ... ବୃଦ୍ଧ...... କିନ୍ତୁ କାହିଁକି ? ?... କି ରୋଗ ହୋଇଛି ମୋର ? ... ... ହାଇ ବ୍ଲଡ଼ପ୍ରେସର ! ! ... ସିଷ୍ଟର !... ଡାକ୍ତରଙ୍କୁ ଡାକ ... ... ସତରେ ମୁଁ କ'ଣ ମରିଯିବି ? ? ... ... ଯୁବକ ହେବାର ସ୍ୱପ୍ନ ମୋର ଲିଭିଯିବ । ହାଃ ... ହାଃ ... ମୃତ୍ୟୁକୁ ମୁଁ ଭୟ କରେ ନାହିଁ ... ଏତେବଡ଼ ଦୁନିଆରେ ମୋ ପାଇଁ କେହି ନାହିଁ । ମୁଁ ଏକା ... ପରିଷ୍କାର ଜହ୍ନାଲୁ ପରି ଢଳଢଳ ହୋଇ ଜଳପୋଡ଼ ଅତୀତର ସୁନେଲି ସ୍ୱପ୍ନରେ ମଗ୍ନ ହୋଇଛି ।"—

... ... ତୁମେ ମୋତେ ଯୁବକ କରିଦେଇ ପାରିବ ସିଷ୍ଟର ? - ମୁଁ ମୋର ଅତୀତକୁ ଫେରିଯାଇ ପାରିବି ? ? ... ପାରିବ ମୋତେ ଯୁବକ କରି... ।

ହସିଲା ଆଖିରେ ନର୍ସ କହିଲା— "ଆପଣଙ୍କୁ ତ ଏହିସବୁ ଔଷଧ ଦିଆଯାଉଛି ଯୁବକ ହେବାପାଇଁ ।" ଆପଣ ଶୋଇପଡ଼ନ୍ତୁ— ମୁଁ ଡାକ୍ତରଙ୍କୁ ଡାକିଆଣେ—

× ×

ପଦଚାରଣ କରୁ କରୁ ଔଷଧ ଉପରେ ତାଙ୍କର ଆଖି ପଡ଼ନ୍ତି, ଶିଶିଟାକୁ ଜାବୁଡ଼ି ଧରି ମନକୁ ମନ ହସିଉଠିଛନ୍ତି । × × × ଏହି ଔଷଧ ତେବେ ମୋର ଯୌବନ ଫେରାଇ ଆଣିଦେବ × × × । ଛିପି ଖୋଲି ସବୁତକ ଟନିକ୍; ସବୁ ଟାବ୍‌ଲେଟ୍ ଗୋଟିକ ପରେ ଗୋଟିଏ ଗର୍ଭସାତ୍ କଲେ । ମାସକ ପାଇଁ ନିର୍ଦ୍ଦିଷ୍ଟ ଥିବା ଔଷଧ ପାଞ୍ଚ ମିନିଟ୍‌ରେ ଶେଷ ।

ଡାକ୍ତର ଆସି ଦେଖିଲେ ମିଃ କର ପ୍ରଳାପ କରୁଛନ୍ତି— "ମୁଁ ଯୁବକ ହେବ ·· ··· ହିଁ ହିଁ ··· ··· ମୁଁ ଯୁବକ ହେବ ··· ··· ଯୁବକ ହେବ ନ୍ନ ··· ଶ୍ଚ ··· ସ୍ନ ··· ।



# ଧନ୍ୟ ହେ ଗୁଣ୍ଡୁଚି କକେଇ

(ହାସ୍ୟରସ-ପୂର୍ଣ୍ଣ)

ଆମ ଗାଁ'ର ଗୁଣିଗଣାଗ୍ରଗଣ୍ୟ, ସର୍ବଗୁଣାଧିକାରୀ ଗୁଣ୍ଡୁଚି ରଥଙ୍କ ଯଶ ଓ କାର୍ଯ୍ୟକଳାପ ସର୍ବଜନବିଦିତ । ଯଦି କେହି କେହି ସେ ମହାପୁରୁଷଙ୍କ ଗୁଣଗାରିମା ସମ୍ପର୍କରେ କିଛି ଜାଣି ନ ଥାନ୍ତି ତେବେ ସେଇଟା ସେମାନଙ୍କର ଦୁର୍ଭାଗ୍ୟ ଛଡ଼ା ଆଉ କିଛି ନୁହେଁ । "ନଅାଁ ଟୁଣ୍ଟା", "ଲାଲ ଗୀବୁକ୍" ଓ ଗୁଞ୍ଜୁରୀ ମୁଠା" ପ୍ରଭୃତି ପତ୍ରିକାମାନଙ୍କରେ ରଥଙ୍କର ମାହାତ୍ମ୍ୟ ପ୍ରାୟ ଅଧିକାଂଶ ସମୟରେ ଆଲୋଚିତ ହୋଇଥାଏ । ରଥଙ୍କର ଅଣ୍ଠା ନଇଁ ନ ଥିଲେ ମଧ୍ୟ ତାଙ୍କର ବୟସ ପଞ୍ଚଷଠୀ ପାଖାପାଖି ହେବ । ଥନ୍ତଲ ପେଟ, ମୁଣ୍ଡଟି ଟାଙ୍ଗରା ଏବଂ ସେଥିରେ ଗୋଟିଏ ଲମ୍ବିର ଗୋଟିଏ ଚୈତନ ଚୁଟି । ହାତରେ ବାଙ୍କୁଲ ବାଡ଼ି । ବାଙ୍କୁଲ ବାଡ଼ିଟି ରଥଙ୍କୁ ବାଟ ଚାଲିବାରେ ବିଶେଷ ସାହାଯ୍ୟ ନ କଲେ ମଧ୍ୟ ଅନେକଗୁଡ଼ିଏ ମହତ୍ତ୍ୱ କାର୍ଯ୍ୟ ସାଧିତ କରିଥାଏ । ଉଦାହରଣ ସ୍ୱରୂପ ରଥେ ତାଙ୍କ ବାଡ଼ପଟେ ଥିବା ପୋଖରୀକୁ ବଡ଼ିସକାଳୁ ଉଠି ବାହାରପାଣି ଗଲାବେଳେ ବାଙ୍କୁଲ ବାଡ଼ିଟି ତାଙ୍କ ସଙ୍ଗରେ ଥାଏ । ପୋଖରୀ ଅଭିମୁଖେ ଯାତ୍ରା କଲାବେଳେ ରଥ ମହାଶୟଙ୍କ ଦୃଷ୍ଟି ପଡ଼େ ଭିନ୍ନ ଭିନ୍ନ ଲୋକଙ୍କ ବାଡ଼ି ବଗିଚାରେ । ବଗିଚା ଭିତରେ ନ ପଶି ବାଡ଼ ଧାରରେ ରହି ଦୂଇଚାରିଟା ସଜ ପନିପରିବା ତୋଳିବାରେ ବାଙ୍କୁଲ ବାଡ଼ିଟି ତାଙ୍କର ବିଶେଷ ସହାୟକ ହୋଇଥାଏ । ଦିନେ ଗୋଟିଏ କଖାରୁକୁ ହସ୍ତଗତ କରୁଥିଲାବେଳେ ପଛପଟୁ ମଧୁ ମିଶ୍ରଙ୍କ ପୁଅ ହାନା ପାଟିକଲା । "କକେଇ ଇଏ କି'ଣ ହେଉଛି" ? ସଙ୍ଗେ ସଙ୍ଗେ କକେଇ ଉତ୍ତର ଦେଲେ "ଆରେ କଖାରୁଟା ଓହଳି ପଡ଼ିଥିଲା, ତାକୁ ବାଙ୍କି ବାଡ଼ି ସାହାଯ୍ୟରେ ଗୁମୁଣ୍ଡିଆ ଉପରକୁ ଟେକିଦେଉଥିଲି । ତୁ ଏପରି ହାଉଳି କରୁଛୁ କାହିଁକି ?"

ଏସବୁ ଛଡ଼ା ଗୁଣ୍ଡୁଚି କକେଇଙ୍କର ବାଙ୍କୁଲବାଡ଼ି ଆହୁରି ଅନେକ ବାଟରେ ତାଙ୍କୁ ସାହାଯ୍ୟ କରିଥାଏ । ସେଥିରୁ ପ୍ରଧାନ ହେଲା ଗାଁ' ଟୋକାଙ୍କ ଚୁଟିଭିଡ଼ା ଆକ୍ରମଣରୁ ତାଙ୍କୁ ରକ୍ଷା କରିବା । ଗାଁ'ର ବାନା, ମକର ପ୍ରଭୃତି ବଗୁଲିଆ ଟୋକାଙ୍କର ରଥଙ୍କ ଚୁଟି ଉପରେ ଭରି ନଜର । ଗାଁ ଦାଣ୍ଡରେ ଚାଲିଯାଉ-


॥ ଶ୍ରୀ ବିନାୟକ ମିଶ୍ର ॥

ଦ୍ୱିତୀୟ ବାର୍ଷିକ (କଳା)

ଥିବା ସମୟରେ ପଛପଟୁ ଛପି ଛପି ଯାଇ ରଥଙ୍କ ଚୁଟିରେ ହାତ ପକାଇ ଜୋରରେ ଝିଙ୍କିଦିଅନ୍ତି । ସେମାନେ ଆନନ୍ଦ ପାଆନ୍ତି । କିନ୍ତୁ କକେଇଙ୍କୁ ଯେ ଚତୁର୍ଦ୍ଦିଗ ଅନ୍ଧାର ଦେଖାଯାଏ ଏକଥା ସେମାନେ ବୁଝିପାରନ୍ତିନ । ସେ ଯାହାହେଉ ବାଙ୍କୁଲ ବାଡ଼ଟି ହାତରେ ଥିଲେ ଚୁଟି ଭିଡ଼ିବା ଦୂରେଥାଉ, ତାଙ୍କ ପାଖରେ ପଶିବାକୁ କାହାର ସାହାସ ନ ଥାଏ । ଆଉଥରେ ରଥ ମହାଶୟ ଏକ ପଡ଼ୋଶୀ ଗାଁରୁ ଭୋଜିଖାଇ ଅଧରାତିକୁ ଘରକୁ ଫେରୁଥିଲେ । ଠିକ୍ ବାଟ ଉପରେ ଦେଖିଲେ ଏକ ମସ୍ତବଡ଼ ସର୍ପ । ସର୍ପଟି ତାଙ୍କ ନଳଗୋଡ଼କୁ ଚୁମ୍ବନ ଦେବା ପୂର୍ବରୁ ବାଙ୍କୁଲବାଡ଼ର ଲୁହା ବଳା ଧଆ ପାଷ୍ଟାରୁ ଭାଗ ସାପର ମୁଣ୍ଡରେ ବାଜସାରିଥିଲା । ତେଣୁ ଏକ ମସ୍ତବଡ଼ ବିପଦରୁ ରଥେଆପଣେ ରକ୍ଷା ପାଇଗଲେ । ବାଙ୍କୁଲ ବାଡ଼ ବିଷୟରେ ବେଶୀ କିଛି ବର୍ଣ୍ଣନା ନ କରି ସ୍ୱୟଂ ଗୁଣ୍ଡୁଚି ରଥଙ୍କର ଗୁଣାବଳୀ ଏବଂ ମାହାତ୍ମ୍ୟ ବର୍ଣ୍ଣନା କରିବା ଆମର ଲକ୍ଷ୍ୟ ।

ଗୁଣ୍ଡୁଚି କକେଇ ଏବେ ସିନା ବୁଢ଼ା ହୋଇଗଲେ କିନ୍ତୁ ତାଙ୍କ ଯୁବକ ସମୟରେ ସେ ଖୁବ୍ ସୁନ୍ଦର ଥିଲେ ବୋଲି ତାଙ୍କ ମୁହଁରୁ ଶୁଣିବାକୁ ମିଳେ । ପରିଧାନ ବୋଇଲେ ଆଜିକାଲି ଗୋଟେ ଗାମୁଛା ହେଲେ ତାଙ୍କର ଚଳିଯାଉଛି । କିନ୍ତୁ ପୂର୍ବେ ସେ କୁରୁତା ଓ ଧୋତି ନ ହେଲେ ପଦାକୁ ବାହାରୁ ନ ଥିଲେ ସେତେବେଳେ ସେ ଘାସକଟା ଠାରୁ ଆରମ୍ଭ କରି ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସମସ୍ତ ବିଦ୍ୟାରେ ପ୍ରବୀଣ ଥିଲେ । (କିନ୍ତୁ ଘୋଡ଼ା କଟା ଠାରୁ ଘାସ ଚଢ଼ା ପର୍ଯ୍ୟନ୍ତ" କେହି ଯେପରି ନ ବୁଝନ୍ତି କାରଣ ଘୋଡ଼ାକୁ କାଟିବା ସହଜ ଘାସ ଉପରେ ଚଢ଼ିବା ମଧ୍ୟ ସହଜ) ରୋଷେଇ କରିବାରେ କକେଇ ଖୁବ୍ ଅଗ୍ରଣୀ । ଅଳ୍ପ ଜିନିଷ ବିନିମୟରେ କିପରି ଅନେକ ଲୋକ ଖାଇପାରିବେ ତା'ର କାଇଦା ଗୁଣ୍ଡୁଚି କକେଇଙ୍କୁ ଭଲ ଜଣା । (ଅବଶ୍ୟ ସମସ୍ତଙ୍କର ପେଟ ନ ପୂରୁ ପଛେ ) ଆଜିକାଲି ଅବଶ୍ୟ ବୟସ ଯିବାରୁ ସେ କେଉଁଆଡେ ରୋଷେଇକୁ ଯାଉନାହାନ୍ତି । ଦୁଆରେ ବସି ରାମନାମ ଜପ କରିବା ଏବଂ ଲୋକଙ୍କର କର କପାଳ କୋଷ୍ଠୀ ଦେଖି ଦୁଇପଇସା ହାତଖର୍ଚ୍ଚ ଉଠାଇବା ତାଙ୍କର ଆଜିକାଲିର ପ୍ରଧାନ କାମ ହୋଇଛି । ହଁ, ତାଙ୍କର ରୋଷେଇର ଚମତ୍କାରିତା ବିଷୟରେ କହିବାକୁ ଭୁଲି-ଗଲି । ସେ ଯଦି ଡାଲି ରାନ୍ଧନ୍ତି ତେବେ ପାଞ୍ଚସେର ଡାଲିରେ ପ୍ରାୟ ଦୁଇସେର ଲୁଣ ଢାଳିଦିଅନ୍ତି । ଫଳତଃ ଭୋଜି ସମୟରେ ହଣ୍ଡାରୁ ଗୋଟିଏ ବାଲ୍ଟି ପରିଷା ହେବା ପାଇଁ ଗଲେ ସେଥିରୁ କିଛି ମଧ୍ୟ ପୁଣି ହଣ୍ଡାକୁ ଫେରିଆସେ । ତର୍କାରୀ ରାନ୍ଧଣା ମଧ୍ୟ ଠିକ୍ ସେପରି । ଅବଶ୍ୟ ତରକାରୀରେ ଲୁଣ ପରିମାଣ ସମାନ ଥାଏ କିନ୍ତୁ ଅସଲ ଦକ୍ଷିଣୀ ଲଙ୍କା ଗୁଣ୍ଡ ଆବଶ୍ୟକ ପରିମାଣଠାରୁ ଯଥେଷ୍ଟ ବେଶୀ ପକାଯାଏ । ତେଣୁ ଭୋଜନରେ ଉପବିଷ୍ଟ ଭଦ୍ରଲୋକେ ଥରେ ଲେଖାଏଁ ତାଙ୍କ ହାତ ରୋଷେଇ ହୋଇ-ଥିବା ଜିନିଷ ପାଟିକୁ ନେଇ ହାତଟେକି ବସିଯାନ୍ତି । ପ୍ରତ୍ୟେକ ବ୍ୟକ୍ତି ଘରକୁ ଫେରି ପୁଣି ଭୋଜନର ବନ୍ଦୋବସ୍ତ ଅବଶ୍ୟ କରିଥାନ୍ତି । ନିଜର ଦୁଇ ପୁଅ ଓ ତିନି ଝିଅଙ୍କ

ବିଭାଘର ସମୟରେ ଗୁଣ୍ଡୁଚି କକେଇ ସ୍ୱହସ୍ତ ରୋଷେଇ ଚଖେଇ ଗାଁବାଲାଙ୍କୁ ଚକିତ କରିଦେଇଥିଲେ ।

ଗୁଣ୍ଡୁଚି ରଥେ ଜଣେ ବିଶିଷ୍ଟ କଳାକାର ଥିଲେ । ରଙ୍ଗମଞ୍ଚ ଉପରେ ତାଙ୍କର ବାନର ରୂପ-ଲକ୍ଷଣ ବଦନମଣ୍ଡଳ ଦେଖି ସମସ୍ତେ କୃତ୍ୟ କୃତ୍ୟ ହେଉଥିଲେ । ଥରେ ମହାଭାରତରୁ କିଛି ଅଂଶ ନାଟକ ଆକାରରେ ଆମ ଗାଁରେ ପ୍ରଦର୍ଶିତ ହେଉଥାଏ । କକେଇଙ୍କ ଚେହେରା ଦେଖି ତାଙ୍କୁ "ଭୀମ" ଭୂମିକାରେ ଅଭିନୟ କରିବା ପାଇଁ ବଛାଗଲା । ତାଙ୍କର ସବୁ ବକ୍ତବ୍ୟ ସେ ପାଣିପରି ମୁଖସ୍ତ କରି ଦେଇଥାନ୍ତି । ନାଟକ ମଞ୍ଚରେ ଯେତେବେଳେ ଦୁଃଶାସନ ସହିତ ମଞ୍ଚ ଉପରେ ତାଙ୍କର ସାକ୍ଷାତ ହେଲା ସେ କହିଉଠିଲେ ରହ ରହ, କେଉଁଣ ଯିବୁରେ ପାମର ଦୁଃଶା, ତୋତେ ଆଜ କରିବି ବିନାଶ ବଂଧନୀ ଭିତରେ ଗଦାଘାତ କରି" । "ବଂଧନୀ ଭିତରେ ଗଦାଘାତ କରି" ଏହା ଶୁଣି ଦର୍ଶକମଣ୍ଡଳୀ ଠୋ ଠୋ ହସିବାକୁ ଆରମ୍ଭ କଲେ । ଅବଶ୍ୟ କେତେଜଣ ଗୁରୁ-ସ୍ଥାନୀୟ ବ୍ୟକ୍ତି ବାରଣ କରିବାରୁ ବଗୁଲିଆ ଝୋଟକେ ଝେକା ଫିଙ୍ଗାରୁ ନିବୃତ୍ତ ହୋଇଥିଲେ । ଅଭିନୟ ପରେ ଏପରି କହିବାର କାରଣ ପଚାରିବାରୁ ସେ କହିଲେ ବଂଧନୀ ଭିତରେ ସେପରି ଲେଖା ହୋଇଥିଲା (ଗଦାଘାତ କରି) ଏବଂ ମୁଁ ତାହାମଧ କଣ୍ଠସ୍ଥ କରିଥିଲି ।

ଆମର ପୂଜ୍ୟ କକେଇ ଶିକାର କରିବାରେ ମଧ୍ୟ ଭଲ ନାଁ କରିଥିଲେ । ଥରେ ଗାଁ ପାଖ ଜଙ୍ଗଲରେ ଗୋଟିଏ ବାଘ ଖୁବ୍ ଉପଦ୍ରବ କରୁଥାଏ । ବାଘ ମାରିବାକୁ ଅଣ୍ଟା ଭିଡ଼ି ବାହାରିଲେ । ଆଗରୁ ସେ କେବେ "ବାଘ" ନ ମାରିଥିଲେ ମଧ୍ୟ ୧୦୧୯ଟି ସାପ, ଜନ୍ତା ପକାଇ ଶତାଧିକ ମୂଷା ଏବଂ ନିଜ ଶୋଇବା ପଲଙ୍କରୁ ସହସ୍ରାଧିକ ଓଡ଼ଶ ମାରିଥିଲେ । ମାତ୍ର ବନ୍ଧୁକ ଚାଳନାରେ ତାଙ୍କର ଜ୍ଞାନ ଥିବାରୁ ସେ ବାହାଦୁରୀ ଦେଖାଇ ବାଘ ଶିକାରକୁ ବାହାରିଲେ । ନିବିଡ଼ ଜଙ୍ଗଲ ମଧ୍ୟରେ ଗୋଟିଏ ଗଛ ଉପରେ ଗୋଟିଏ ଭାଡ଼ ବନ୍ଧାହେଲା । ତାହା ଉପରେ ସ୍ୱୟଂ ରଥେ ଏବଂ ତାଙ୍କର ତିନି ଚାରିଜଣ ବନ୍ଧୁ ବାଘକୁ ଅପେକ୍ଷା କରି ବସିଲେ । କାରଣ ନିକଟରେ ଥିବା ଗୋଟିଏ ପୋଖରୀକୁ ବାଘ ପାଣି ପିଇବା ପାଇଁ ଆସେ । ଅନେକ ସମୟ ଅପେକ୍ଷା କରିବା ପରେ ସେଇବାଟେ ବାଘ ଆସିଲା । ବନ୍ଧୁକଧାରୀ ଗୁଣ୍ଡୁଚି କକେଇ ସଜାଗ ହୋଇଉଠିଲେ କିନ୍ତୁ ଟିକ୍ ସେତିକିବେଳେ ମଣିଷ ବାସନା ପାଇ ବାଘ ଗୋଟିଏ ଗର୍ଜନ କଲା । ସେତିକିରେ ତ କକେଇଙ୍କର ପିଳେହିଗଲାଣି । ଖାଲି ଯେ, ବନ୍ଧୁକଟି ହାତରୁ ଖସିପଡ଼ିଲା ତା ନୁହେଁ, ସେ ନିଜେ ଚିତ୍ପଟାଙ୍ଗ ମାରି ଗଛ ତଳେ ଆସି ପଡ଼ିଲେ । ବାଘକୁ ଶିକାର କରିବାକୁ ଆସି ସେ ନିଜେ ଅବଶ୍ୟ ବାଘର ଶିକାର ହୋଇଥାନ୍ତେ କିନ୍ତୁ ତାଙ୍କର ପଡ଼ିବା ଶବ୍ଦରେ ବାଘ ଛାନିଆ ହୋଇ ଚମ୍ପଟ । ଏପ୍ରକାର ଦୁର୍ଘଟଣାରେ କକେଇଙ୍କର ବିଶେଷ କ୍ଷତି ନ ହୋଇଥିଲେ ମଧ୍ୟ ସମ୍ମୁଖଦାନ୍ତ ଦୁଇଟି ଭୁଶୁଡ଼ି ଗଲା ଏବଂ ଦୁଇ ନାସା

ରନ୍ଧ୍ର ରୁ ଉଷ୍ମ ରକ୍ତଧାର ଛୁଟିଲା । ଅନ୍ୟାନ୍ୟ ସଂଗୀମାନେ ତାଙ୍କୁ କାନ୍ଧରେ ପକାଇ ଗାଁ'ରେ ଆଣି ହାଜର କରାଇଲେ ।

ଆଜକାଲିତ ରକେଇ ବୁଢ଼ା ହୋଇଗଲେଣି । ତେଣୁ ଦୁଇପଇସା କମେଇବା ପାଇଁ ସେ ଅଧମ ଉଦ୍ଧାରଣ ପନ୍ଥା ଜ୍ୟୋତିଷଗିରି କରୁଛନ୍ତି । ସେ କପରି ଭଲ ଜ୍ୟୋତିଷ, ତା'ର ମଧ୍ୟ ଉଦାହରଣ ରହିଛି ।

ଥରେ ଆମ ଗାଁ'ପାଖ ରତନପୁରର ବାସୁ ବେହେରାର ଗୋଟିଏ ମଇଁଷି ହଜିଲା । ତନଖନ ଖୋଜ ଖୋଜ ତା'ର କୌଣସି ସନ୍ଧାନ ମିଳିଲା ନାହିଁ । ବିଚରା ବାସୁଆ ନସରପସର ହୋଇ ଧାଇଁଲା ଗୁଣ୍ଡୁଚି ରକେଇଙ୍କ ପାଖକୁ । ଇଏ ଯାଇ ପହଞ୍ଚିଲା ବେଳକୁ ଜ୍ୟୋତିଷ ମହାଶୟେ ଚକାମୁଣ୍ଡି ମାରି ତାଳପତ୍ର ପୋଥିଟିଏ ପାଖରେ ଥୋଇ ଦାଣ୍ଡପିଣ୍ଡାରେ ବସିଛନ୍ତି । ବାସୁଆ ଦଣ୍ଡବତ ପକାଇ କହିଲା, ଆଜ୍ଞା ଗୋଟିଏ ପ୍ରଶ୍ନ କରନ୍ତୁ । ସଙ୍ଗେ ସଙ୍ଗେ ଅଣ୍ଟାରୁ ମୁଣ୍ଡା ଖଡ଼ିଟି କାଢି ଭୂଇଁରେ ଗୋଟିଏ ମଣ୍ଡଳ କାଟି ରଥେ କହିଲେ — "ଆରେ ଆଠଣା ପଇସା ଅନୁକୂଳ ଥୁଅ" । ବାସୁଆ ଆଠଣା ପଇସା ଥୋଇଲା । ତା ପରେ ରଥେ କହିଲେ — "ଗୋଟାଏ ଜନିଷ ହଜିଛି କରେ ?"

ମୂର୍ଖ ଗଉଡ଼ କହିଲା, "ହଁ ଆଜ୍ଞା ଗୋଟିଏ ଜନିଷ ନୁହେଁ ଜୀବ"

ରଥେ— "ଆରେ ହେଲାନ ପଶୁଟାଏ ହଜିଛି, ଖଡ଼ ଡାକୁଛି ।

ବାସୁଆ— "ଆଜ୍ଞା ହଁ" ।

ରଥେ— "ତା'ର ଚୂରଟା ଗୋଡ଼, ଗୋଟିଏ ମୁଣ୍ଡ ଏବଂ ଗୋଟିଏ ଲାଞ୍ଜ" ।

ବାସୁଆ— "ଆଜ୍ଞା ଚରବୁଲା ଜନ୍ତୁ ଯେତେବେଳେ ଗୋଡ଼ ନ ଥାନ୍ତା କପରି" ।

କଚ୍ଛି ସମୟ ଚନ୍ତା କରି ରଥେ ଦେଖିଲେ, ବାସୁଆ ଯେତେବେଳେ ଗଉଡ଼ ତା'ର ନଶ୍ଚୟ ଗାଈ ହଜିଛି ।

ତେଣୁ ସେ ସଙ୍ଗେ ସଙ୍ଗେ କହିଲେ — "ଆରେ ଗାଈଟେ ହଜିଛି କି" ?

ବାସୁଆ କହିଲା— "ନାଇଁ ଆଜ୍ଞା ମଇଁଷିଟାଏ" ।

କଥା ବୁଲେଇ ରଥେ କହିଲେ — ଆରେ ହେଲାନ ଗାଈ ହେଉଛି ମାଈ, ମଇଁଷି ମଧ୍ୟ ମାଈ, ଗାଈର ଦୁଇଟା ଶିଙ୍ଗ, ମଇଁଷିର ମଧ୍ୟ ଦୁଇଟା ଶିଙ୍ଗ । ଖଡ଼ ଡାକିଲା ଯେ, ଗୋଟିଏ ଶିଙ୍ଘ ବଶିଷ୍ଟ ମାଈ ପ୍ରାଣୀ । ହ ଚୋର ମଇଁଷିଟି ଏଠିଠାରୁ ଉତ୍ତରରେ

୧୦ ମାଇଲ ଦୂରରେ କମ୍ବା ପଶ୍ଚିମରେ ୫ ମାଇଲ ଦୂରରେ ¦ଚଳୁଛନ୍ତି । ଅନୁସନ୍ଧାନ କଲେ ମିଳିବ ।” ତା ପରେ ଗଡ଼ଡ଼ ଚାଲିଗଲା । ଦୁଇଦିନ ପରେ ଗାଁ ଠାରୁ ପୂର୍ବ ଦିଗରେ ଏକ ବନ୍ୟ କୂପ ମଧ୍ୟରେ ମହର୍ଷିର ମୃତ ଦେହ ଆବିଷ୍କୃତ ହେଲା ।

ଆମ ଗୁଣ୍ଡୁଚ କକେଇ ପାଠଶାଠ ମଧ୍ୟ ପଢ଼ିଛନ୍ତି । ସେ ସେତେବେଳେ ଇଂରାଜୀ ମଧ୍ୟ ପଢ଼ିଥିଲେ । ତେଣୁ ମଝିରେ ଦେଖାଇ ହୋଇ କହନ୍ତି— "ଆଜି-କାଲର ପିଲାଗୁଡ଼ାକ ଭେରି ବ୍ୟାଡ ହୋଇଗଲେଣି । ଟିଚରମ୍ୟାନ୍ (ଗୁରୁଜନ)ଙ୍କ କଥା ମୋଟେ ମାନୁନାହାନ୍ତି ।

ସେ ଯାହାହେଉ, ଗୁଣ୍ଡୁଚ କକେଇଙ୍କ ପରି ସୁଯୋଗ୍ୟ ସନ୍ତାନ ପାଇ ଆମ ଗାଁ ମାଟି ଗର୍ବିତ ।

# ମଧ୍ୟାହ୍ନର ଝୁଁଡ଼

ନିରଞ୍ଜନ ବେହେରା
୩ୟ ବାର୍ଷିକ (କଳା)

ଟେଗୋଟାଏ ଇଜି ଚେୟାରରେ ନିଜର ଅବଶ ତନୁକୁ ଲମ୍ବାଇ ଦେଇଛନ୍ତି ଡାକ୍ତର ସୁଶାନ୍ତ ପଟ୍ଟନାୟକ । ଚାହିଁରହିଛନ୍ତି ସନ୍ଧ୍ୟାକାଶକୁ । ଭାଲଦେଶରେ ଦୁଶ୍ଚିନ୍ତାର ରେଖାପାତ; ଅଧର ମଳିନ; ଚକ୍ଷୁ ତେଜୋହୀନ; ସର୍ବାଙ୍ଗ କ୍ଷୀଣ ।

ତଳେ ସୁଶ୍ୟାମଳ ଲନ୍ । ଉପରେ ନୀଳାକାଶ । ଲନ୍ ମଝିରେ କେଉଁଠି କେମିତି ଗ୍ଲେଟ ଗ୍ଲେଟ ଧଳା ଧଳା ଫୁଲ । ଆକାଶରେ ଉଠିଆସୁଥିଲା ଟିକି ଟିକି ତାରା । ଚାହିଁଲେ ଆକାଶକୁ, ଚାହିଁଲେ ଲନ୍‌କୁ । ବାସ୍ତବିକ୍ କି ଚମତ୍କାର ! ଏଇ ତାରା, ଏଇ ଫୁଲ କେଡ଼େ ସୁନ୍ଦର ! ସେ ବି ଦିନେ ଏମିତି ଥିଲେ । ତାରା ପରି ଖିଲ ଖିଲ ହସୁଥିଲେ । ଫୁଲ ପରି ମୃଦୁ ମୃଦୁ ପବନରେ ନାଚୁଥିଲେ । କିନ୍ତୁ ଆଜି··· । ଜୀବନର ସକାଳ ଯାଇଛି । ମଧ୍ୟାହ୍ନ ଯାଇଛି । ସନ୍ଧ୍ୟା ଆସି ଉପସ୍ଥିତ । କବି ଏଲିୟଟ୍‌ଙ୍କ ସେଇ କେଇପଦ ମନକୁ ଆଲୋଡ଼ିତ କଲା —

> "I grow old......I grow old
> I shall wear the bottons off,
> My trousers rolled."

(ବାର୍ଦ୍ଧକ୍ୟ ଆସୁଛି ··· ମୁଁ ବୁଢ଼ା ହୋଇଯାଉଛି । ଯୌବନର ପରିତ୍ୟକ୍ତ ଛିଣ୍ଡା ଟ୍ରାଉଜରର ମୋତେ ଏଣିକି ପିନ୍ଧିବାକୁ ପଡ଼ିବ ତାଳି ପକାଇ) । ଡାକ୍ତର ସୁଶାନ୍ତ ପଟ୍ଟନାୟକ ଆଜି ବାର୍ଦ୍ଧକ୍ୟର ଅବସାଦ ଓ ବ୍ୟର୍ଥତାର ଗ୍ଲାନିରେ ମର୍ମାହତ । ଏଥିରୁ ନିସ୍କୃତି ପାଇବାକୁ ସେ ଅତୀତର ହଜିଲା ଅସ୍ପଷ୍ଟ ସ୍ମୃତିଗୁଡ଼ିକୁ ଗୋଟି ଗୋଟି କରି ସାଉଣ୍ଟିବାକୁ ବ୍ୟାକୁଳ ।

"ନମସ୍କାର ଡାକ୍ତର ବାବୁ ।"

"ନମସ୍କାର ! ଆରେ ସୁରେନ୍ଦ୍ର ବାବୁ ଯେ ! କବି, ଗାଳ୍ପିକ, ଓଡ଼ିଆ ସାହିତ୍ୟର କର୍ଣ୍ଣଧାର ସୁରେନ୍ଦ୍ର ମିଶ୍ର ମନେ ପଡ଼ିଲା । ଆଜି ଏଇ ସନ୍ଧ୍ୟାରେ ଆସିବାକୁ କହିଥିଲି ନା ? ଠିକ୍ କରିଛନ୍ତି ଆପଣ । ଠିକ୍ ସମୟରେ ଆସିଛନ୍ତି । ଅଶେଷ ଧନ୍ୟବାଦ ! ବସନ୍ତୁ ।"

ଡାକ୍ତର ସୁରେନ୍ଦ୍ର ବାବୁଙ୍କୁ ସାମନା ଚେୟାରରେ ବସିବା ପାଇଁ ଇଙ୍ଗିତ ଦେଇ ଚା' ପାଇଁ ବରାଦ କଲେ ।

ଚା' ପର୍ବ ଶେଷ ହେଲା । ଆରମ୍ଭ କଲେ ଡାକ୍ତର ।

"ଶୁଣନ୍ତୁ କବି — ଠିକ୍ ମୁଁ ଏମ୍. ବି. ବି. ଏସ. ପାଶ୍ କଲା ପରେ ପରେ ମୋର ବାହାଘର ହୁଏ ମିସ୍ ଲଳିତା ସହ । ହଁ ଲଳିତା, ଜଣେ ସମ୍ଭ୍ରାନ୍ତ ଧନୀ ବାପର ଏକମାତ୍ର ଝିଅ । ରୂପ ଓ ଗୁଣରେ ଥିଲା ସେ ଅସାମାନ୍ୟା । ଏକମାତ୍ର କନ୍ୟା ବୋଲି ପିତା ତାଙ୍କର ତାଙ୍କୁ ଖୁବ୍ ଭଲପାଉଥିଲେ ଏବଂ ବାହାଘର ପରେ ପରେ ତାଙ୍କର ସ୍ଥାବର ଓ ଅସ୍ଥାବର ସମସ୍ତ ସମ୍ପତ୍ତି ମୋର ନାମରେ ଉଇଲ୍ କରଦେଲେ । ଠିକ୍ ମୋର ମନେପଡ଼ୁଛି ଖୁବ୍ ଭଲ କବି । ଲଳିତାକୁ ମୁଁ ପାଉଥିଲି । ଜୀବନଠାରୁ ଅଧିକ ସ୍ନେହ କରୁଥିଲି । କିନ୍ତୁ ।"

"କିନ୍ତୁ କ'ଣ ଡାକ୍ତର" । ସୁରେନ୍ଦ୍ର ବାବୁ ଏଥର କିଛି ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ଡାକ୍ତରଙ୍କ ମୁହଁକୁ ।

"କହୁଛି । କିନ୍ତୁ ସେ ସୁଖ ଓ ଆନନ୍ଦରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଦୁଇବର୍ଷ ପରେ ଲଳିତା ହେଲା ଗୋଟିଏ ସନ୍ତାନର ଜନନୀ । ଝିଅଟି ଦେଖିବାକୁ ଖୁବ୍ ସୁନ୍ଦର ଓ ହୃଷ୍ଟପୁଷ୍ଟ । ଠିକ୍ ମୋର ମୁହଁ, ମୋର ରଙ୍ଗର ଝିଅଟିଏ ।

ଏକ ଦୀର୍ଘଶ୍ୱାସ ଛାଡ଼ିଲେ ଡାକ୍ତର । ଇଜି ଚେୟାରର ପଛକୁ ଆଉଜିପଡ଼ି ନିର୍ନିମେଷ ନୟନରେ ଚାହିଁଲେ ଆକାଶକୁ — ସତେଯେପରି ହୃଦୟର ଗଭୀର ତଳୁ ଉଠି ଆସୁଥିବା କୋହକୁ ଚାପିରଖିବାକୁ ଯାଇ ସେ ସିଧାକରି କବିଙ୍କ ମୁହଁକୁ ଚାହିଁ ପାରୁ-ନାହାନ୍ତି । କିଛି ସମୟ ନୀରବରେ କଟିଲା ।

"ତା'ପରେ କ'ଣ ହେଲା ?" ନୀରବ ଭାଙ୍ଗିଲେ କବି ।

"କହୁଛି କବି କହୁଛି । ମୋର ଜୀବନର ଠିକ୍ ଏଇ ମଧ୍ୟାହ୍ନରେ ସୃଷ୍ଟି ହେଲା ଏକ ପ୍ରବଳ ଝଡ଼ । ସେ ଝଡ଼ର କ୍ଷତ ଆଜି ମଧ୍ୟ ମୋର ହୃଦୟରେ, ମୋର ପ୍ରତି ଶିରା ପ୍ରଶିରାରେ ପ୍ରବଳ ଜ୍ୱାଳା ସୃଷ୍ଟି କରୁଛି । ହୁଏତ ମୃତ୍ୟୁପର୍ଯ୍ୟନ୍ତ ବି ଏ ପୀଡ଼ା ସହ୍ୟ କରିବାକୁ ପଡ଼ିବ ।

"ଜନନୀ ହେବା ପରେ ଚେଷ୍ଟା କରି ମଧ୍ୟ ଲଳିତାକୁ ଆଉ ଭଲ ପାଇପାରିଲି ନାହିଁ । ତା'ଠାରୁ ସବୁବେଳେ ଦୂରେଇ ରହିବାକୁ ଇଚ୍ଛା ହେଲା । ଯେଉଁ ମୁହଁର ହସ, ଯେଉଁ ଚକ୍ଷୁର ଚାହାଣୀ ମୋତେ ଘଣ୍ଟା ଘଣ୍ଟା ଧରି ଘରେ ବାନ୍ଧି ରଖିପାରୁଥିଲା ସେସବୁ ଯେପରି ନିଷ୍ପ୍ରଭ, ଅନାକର୍ଷଣୀୟ ମନେହେଲା ।"

"କିଛିଦିନ ପରେ ମୁଁ ଆସିଷ୍ଟାଣ୍ଟ ପ୍ରଫେସର ନିଯୁକ୍ତି ପାଏ । ଟ୍ରିଟ୍ମେଣ୍ଟ ସଙ୍ଗେ ସଙ୍ଗେ କ୍ଲାସ ବି ନେବାକୁ ପଡ଼େ । ମୋର କାର୍ଯ୍ୟଭାର ବହୁତ ବଢ଼ିଯାଏ । ବିଶେଷ

ଖଟଣୀ ଯୋଗୁଁ ରାତିର ବହୁ ସମୟ ପରେ ଘରକୁ ଫେରେ । କିନ୍ତୁ ଆଶ୍ଚର୍ଯ୍ୟ ! ରାତିରେ ଯେତେ ବିଳମ୍ବ କରି ଫେରିଲେ ବି ଲଳିତାର କୌଣସି ଆପତ୍ତି ନ ଥାଏ । ପୂର୍ବେ ଯେପରି ଟିକିଏ ବିଳମ୍ବ ହେଲେ ନାନା ପ୍ରଶ୍ନ ପଚାରି, କୈଫିୟତ ମାଗି ମୋତେ ବ୍ୟତି-ବ୍ୟସ୍ତ କରିପକାଉଥିଲା ଓ ଟିକିଏ କଥାରେ ରାଗ ଅଭିମାନ ପ୍ରକାଶ କରୁଥିଲା, ଜନନୀ ହେବା ପରେ ସେସବୁ ଯେପରି ପୂରା ଓଲଟପାଲଟ ହୋଇଯାଇଛି । ମୋର ବି ମନେହେଲା, ଲଳିତା ମୋ'ଠାରୁ ଦୂରେଇ ଦୂରେଇ ଯାଉଛି । ଆଉ ଗୋଟାଏ ଦିଗ ବି ଲକ୍ଷ୍ୟ କରିବାର କଥା — ଲଳିତା ଝୁଆଟିକୁ ଯେତେ ଭଲପାଉଥିଲା, ମୁଁ ଝୁଆଟିକୁ ସେତେ ଘୃଣା କରୁଥିଲି ।"

ଚମକି ଉଠିଲେ କବି । ପ୍ରଶ୍ନ କଲେ—

' କ'ଣ ଆପଣଙ୍କ ସନ୍ତାନକୁ ଆପଣ ନିଜେ ଘୃଣା କରୁଥିଲେ ?"

' ହଁ କବି । ମୋର ନିଜ ରକ୍ତର ସନ୍ତାନକୁ ମୁଁ ନିଜେହିଁ ଘୃଣା କରୁଥିଲି । କାରଣ ମୋର ଏକ ଦୃଢ଼ ଧାରଣା ହେଲା ଯେ ଏଇ ଝୁଆଟି ଯୋଗୁଁ ହିଁ ଲଳିତା ମୋ ପ୍ରତି ସ୍ନେହ, ମାୟା, ମମତା ସବୁକିଛି ଭୁଲି ଯାଉଛି ।

' ଠିକ୍ ମୋ ଜୀବନର ଏହି ସନ୍ଧିକ୍ଷଣ ମୁହୂର୍ତ୍ତରେ ମିସ୍ ଲାବଣ୍ୟଙ୍କ ଆବିର୍ଭାବ । ବର୍ତ୍ତମାନର ମୋ ସ୍ତ୍ରୀ ଯାହାଙ୍କୁ ଆପଣ ଲାବଣ୍ୟଦେବୀ ବୋଲି ଡାକନ୍ତି । ସେତେବେଳେ ସେ ମିସ୍ ଲାବଣ୍ୟ — ମେଡ଼ିକାଲ କଲେଜର କୃତୀ ଛାତ୍ରୀ । ଲାବଣ୍ୟ ଖୁବ୍ ଭଲ ପଢୁଥିଲା । ଛାତ୍ର ଓ ଶିକ୍ଷକ ତାକୁ ଖୁବ୍ ଭଲପାଉଥିଲେ । ସକାଳେ ଓ ସନ୍ଧ୍ୟାରେ ଲାବଣ୍ୟ ଆସେ ମୋ ପାଖେ ପଢିବା ପାଇଁ । ତା'ର ପିତା ଥିଲେ ମୋର ବନ୍ଧୁ । ତେଣୁ ମୋତେ ଲୋକାଲ ଗାର୍ଡିଏନ୍ ନିଯୁକ୍ତ କରିଥିଲେ । ଲାବଣ୍ୟର ସମସ୍ତ ସୁବିଧା ଅସୁବିଧା ମୁଁ ବୁଝୁଥିଲି ।

କିଛିଦିନ ପରେ ଲାବଣ୍ୟ ଓ ମୋ ଭିତରେ ସମ୍ବନ୍ଧଟା ଖୁବ୍ ବଢିଗଲା । ଦୁହେଁ ଦୁହିଁଙ୍କୁ ଭଲପାଇ ବସିଲୁ । ଛାତ୍ରୀ ଓ ଶିକ୍ଷକ ସମ୍ବନ୍ଧ ଏକ ପ୍ରହସନରେ ପରିଣତ ହେଲା । ଆପଣଙ୍କ ପାଖରୁ ମୁଁ କିଛି ଲୁଚାଇ ରଖୁନାହିଁ କବି । ବାହାରେ ଆମେ ଛାତ୍ରୀ ଓ ଶିକ୍ଷକ ଭାବେ ବେଶ୍ ଅଭିନୟ କରି ଭିତରେ ପ୍ରେମିକ ଓ ପ୍ରେମିକା ସାଜିଲୁ । ଆଜି ଭାବିଲେ ଖୁବ୍ ଆଶ୍ଚର୍ଯ୍ୟ ଲାଗେ କବି । ନିଜ ସ୍ତ୍ରୀକୁ ଛାଡ଼ି ଜଣେ ଛାତ୍ରୀ ପ୍ରତି ଏତେ ଆକୃଷ୍ଟ ହେଲି କିପରି । ଏ ରହସ୍ୟ ଉଦ୍‌ଘାଟନ କରିବା ମୋ ପକ୍ଷରେ କଷ୍ଟକର ହୋଇପଡ଼ୁଛି ।

"ଆପଣ ଓ ମିସ୍ ଲାବଣ୍ୟଙ୍କ ମିଳାମିଶାଟାକୁ ଆପଣଙ୍କ ସ୍ତ୍ରୀ ଲଳିତା କ'ଣ ସହ୍ୟ କରିପାରୁଥିଲେ ?"

"ନା କବ । ଆମ ଦୁହିଁଙ୍କ ମିଳାମିଶାକୁ ସେ ମୋଟେ ପସନ୍ଦ କରୁ ନ ଥିଲେ । କିନ୍ତୁ ପ୍ରକାଶ୍ୟ ଅଭିଯୋଗ କେବେ କରିନାହାନ୍ତି । ମରବରେ ଆଖିରୁ ଲୁହ ଗଡ଼ାଇବା ମୁଁ ବହୁଥର ଲକ୍ଷ୍ୟ କରିଛି । କିନ୍ତୁ ଏ ଲୁହ ଆମ ଦୁହିଁଙ୍କ ପଥରେ ବାଧା ସୃଷ୍ଟି କରି ପାରିନାହିଁ ।

"୧୯୫୦ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୧୧ ତାରିଖ ମୃତ୍ୟୁ ପର୍ଯ୍ୟନ୍ତ ଚିର ସ୍ମରଣୀୟ ହୋଇ ରହିବ । ସେଦିନ ଲାବଣ୍ୟ ଓ ମୁଁ ସେକେଣ୍ଡ ଶୋ ସିନେମା ପରେ ବସାକୁ ଫେରିଲୁ । ଘରେ ପହଞ୍ଚି ଦେଖିଲି ସବୁ କବାଟ ଖୋଲା ଅଛି । କିନ୍ତୁ ମୋ ସନ୍ତାନ ଓ ଲଳିତାକୁ ପାଇଲି ନାହିଁ । ଭାବିଲି କାହା ଘରକୁ ଯାଇଥିବେ, ଏହିକ୍ଷଣି ଫେରିବେ । କିନ୍ତୁ ରାତି ଗୋଟାଏରେ କାହା ଘରକୁ ବା କାହିଁକି ଯିବେ । ମନରେ ନାନା ଆଶଙ୍କା ସୃଷ୍ଟି ହେଲା । ଧୈର୍ଯ୍ୟଧରି ରାତି ଶେଷପର୍ଯ୍ୟନ୍ତ ଅନିଦ୍ରା ରହିଲି । ଚୁହିଁ ରହିଲି କାଳେ ଲଳିତା ଫେରିବ ।"

ଲଳିତା କ'ଣ ଫେରିଲା ନାହିଁ !" ଆଶ୍ଚର୍ଯ୍ୟର ସହ ଅପଲକ ନେତ୍ରରେ ଚୁହିଁ ରହିଲେ କବି ।

"କହୁଛି କବି" । ମନର କୋହକୁ ଚାପି ରଖି କହିବାକୁ ଚେଷ୍ଟା କରୁଥିଲେ ଡାକ୍ତର । ହଠାତ୍ ଭାଙ୍ଗିପଡ଼ିଲେ । ଚକ୍ଷୁଯୁଗଳରୁ ଛୁଟିଆସିଲା ଅଶ୍ରୁର ସ୍ରୋତ । କଣ୍ଠ ସ୍ୱର କ୍ଷୀଣ ହୋଇ ଆସିଲା ।

"ଆପଣଙ୍କ ଦୁଃଖକୁ ମୋ ହୃଦୟରେ ଅନୁଭବ କରୁଛି ଡାକ୍ତର । କୁହନ୍ତୁ— ଧୈର୍ଯ୍ୟ ହରାନ୍ତୁ ନାହିଁ, ମୁଁ ଶୁଣିବାକୁ ଉତ୍କଣ୍ଠିତ । କୁହନ୍ତୁ, ଲଳିତା କ'ଣ ଆଉ ଫେରିଲାନି ?"

"ନା, ସେ ଆଉ ଫେରିନି । ଲଳିତା ଆଉ ଫେରିଲାନି କବି । ଚିରଦିନ ପାଇଁ ଫେରିଲାନି । ଟେବୁଲ ଉପରୁ ଖଣ୍ଡେ ଚିଠି ପାଇଲି । ଲଳିତା ଲେଖିଛି । 'ଦେବତା ମୋର, ବହୁଦିନୁ ଅଭିଳଷିତ ମୋର ପଥ ମୁଁ ଆଜି ବାଛିନେଉଛି । ତୁମ ପଥରେ ମୁଁ ବା ମୋର ସନ୍ତାନ କଣ୍ଟା ହୋଇ ଛିଡ଼ା ହେବାକୁ ମୋର ଇଚ୍ଛା ନୁହେଁ । ତେଣୁ ମୋତେ ଓ ନାଲୁକୁ ବିଦାୟ ଦିଅ । ତୁମ ପଥ ସୁଗମ ହେଉ । ଲାବଣ୍ୟ ସହ ସୁଖରେ ରୁହ ।'

"ସକାଳ ଖବରକାଗଜରେ ପଢେ 'ନିଜର ତିନିବର୍ଷର ଶିଶୁପୁତ୍ର ସହ ଯୁବତୀର ହୃଦୟ ବିଦାରକ ଆତ୍ମହତ୍ୟା' ଶୀର୍ଷକ ସମ୍ବାଦ । ନାଲୁ ଓ ଲଳିତାର ମୃତ ଫଟୋ ବି କାଗଜରେ ବାହାରିଥାଏ । ତାହା ଆଜି ବି ମୋ ଆଲମିରା ଭିତରେ ସ୍ମୃତି ଚିହ୍ନ ସ୍ୱରୂପ ରହିଛି ।

"ହୃଦୟ ହାହାକାର କଲା, କାରୁଣ୍ୟ ବେଦନାରେ ମର୍ମାହତ ହୋଇ ଜୀବନକୁ ଦୁଃସହ ମନେକଲା, କିନ୍ତୁ ଲାବଣ୍ୟର ସ୍ନେହ, ସହାନୁଭୂତି ଓ ପରିଚର୍ଯ୍ୟାରେ ସବୁ ଦୁଃଖକୁ ଭୁଲିଗଲା । କିନ୍ତୁ ଭୁଲିପାରୁନି ଲଳିତାର ହସ ହସ ମୁହଁକୁ ଓ ମାଲୁର କାହାଁଣୀକୁ । ଝଡ଼ର ଶେଷ ପରେ ବି ସେସବୁ ଏକ ଏକ ଅଲିଭା ଦାଗ ହୋଇ ରହିଛି ।

"କବି, ଲଳିତା ବଦଳରେ ଲାବଣ୍ୟକୁ ପାଇଛି । କିନ୍ତୁ ମାଲୁ ବଦଳରେ ପାଇଛି କାହାକୁ ? ମୁଁ ଆଜି ନିଃସନ୍ତାନ । ଡାକ୍ତରୀ ବିଦ୍ୟାର ସବୁ କରାମତି ପରେ ବି ଲାବଣ୍ୟ ମା' ହେବାର ଯୋଗ୍ୟତା ଅର୍ଜନ କରିନାହିଁ । ସେଇ ମୋର ଚରମ ଦୁଃଖ ।"

"ବାସ୍ତବିକ୍ ଭଲ ପ୍ଲଟ୍‌ଟାଏ । ଏପରି ବାସ୍ତବ କାହାଣୀକୁ ପଶ୍ଚାତ୍ତରେ ରଖି ମୁଁ ଉପନ୍ୟାସ ଲେଖିବାକୁ ଭଲପାଏ । ଧନ୍ୟବାଦ ! ଯାଉଛି ।" ଯିବାକୁ ଉଦ୍ୟତ ହେଲେ କବି .. ... ...



# ଅଜନ୍ତାର କାରୁଣିକା

**ଶ୍ରୀ ପୂର୍ଣ୍ଣଚନ୍ଦ୍ର ଜେନା**
ତୃତୀୟ ବାର୍ଷିକ (କଳା)

ଜୀବନର ଅନେକ ଦିନ ତଳର ସ୍ମୃତି । ସେଦିନ ଅସ୍ତ ଗଗନରେ ରକ୍ତିମ ଗୋଧୂଳି । ବିଦାୟ ନେଇଥିଲି ଶୁଦ୍ରକ । ଭାରତୀୟ କଳା ସ୍ଥାପତ୍ୟର ବିକାଶ ପାଇଁ ସେ ଯାଇଥିଲେ ସୁଦୂର ଗ୍ରୀକ୍— ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଆଦେଶ ଏବଂ ଗ୍ରୀକ୍ ପରିବ୍ରାଜକ ମେଗାସ୍ଥିନିସ୍‌ଙ୍କ ଏକାନ୍ତ ଅନୁରୋଧରେ । କିନ୍ତୁ ... ?'' କିନ୍ତୁ ଦୀର୍ଘ ୨୦ ବର୍ଷ ପରେ କୌଣସି ସନ୍ଧାନ ମିଳିଲିନି । କାରୁଣିକାର ଆଖିରେ କେଇବିନ୍ଦୁ ଲୁହ— ଯେମିତି ଫଗୁଣ ସକାଳରେ ମେଘାଚ୍ଛନ୍ନ ଆକାଶର ଝିପି ଝିପି ବର୍ଷା

× × ×

'ଶିଳ୍ପୀ !

'ମହାରାଜ'

'ଭାରତର ସମସ୍ତ ନାଗରିକ କ'ଣ ତୁମପରି କଳାର ପୂଜାରୀ ?'

'ମହା'ରାଜ'

'ଧନ୍ୟ ଭାରତ ଦେଶ, ଧନ୍ୟ ତା'ର ସନ୍ତାନର ଅପୂର୍ବ କଳା ଚାତୁରୀ । ପଥରର ଶୁଷ୍କ ଦେହରେ ଫୁଟାଇ ପାରନ୍ତି ମଣିଷ ଲାବଣ୍ୟବତୀର ଚାରୁ ତନୁ ଲତିକା' ।

'ଶିଳ୍ପୀ !'

'ମହାରାଜ'

'କହିପାରିବ ?'

'କହନ୍ତୁ' ।

'ଜ୍ୟୋତ୍ସ୍ନାର ରୂପେଲି କିରଣରେ କାହିଁ କଳିକା ଆନନ୍ଦରେ ଆତ୍ମହରା ହୋଇଉଠେ କାହିଁକି ?'

'ମନର ଆସକ୍ତି ଏବଂ ହୃଦୟର ଚିରନ୍ତନ ମମତାରେ ।'

'ଶିଳ୍ପୀ ?'

'ମହାରାଜ' ।

'ତେବେ ତୁମକୁ ଗୋଟାଏ ଗୁରୁଦାୟିତ୍ୱ ବହନ କରିବାକୁ ହେବ । ସାମ୍ରାଜ୍ଞୀ ''ଏଲିଜେନ''ଙ୍କର ଏକ ପ୍ରସ୍ତର ମୂର୍ତ୍ତି

ଖୋଦିତ କରିବାକୁ ହେବ । କିନ୍ତୁ ଦେଖ — ଜ୍ୟୋତ୍ସ୍ନା ରାତ୍ରିରେ କହିଁ କଳକାର ଯେଉଁ ଆତ୍ମତୃପ୍ତିର ହସ, ତାହା ଯେପରି ସାମ୍ରାଜ୍ଞୀଙ୍କ ଅଧରରେ ସ୍ପଷ୍ଟ ପ୍ରକାଶମାନ ହେଉଥାଏ । କିନ୍ତୁ ଯେଉଁ ପ୍ରସ୍ତରରେ ଏହି ମୂର୍ତ୍ତି ଖୋଦିତ ହେବ, ତାହା ଏତେ ମୂଲ୍ୟବାନ ଯେ ସମଗ୍ର ପୃଥିବୀରେ ମିଳିବା ବିରଳ । ଆଲେକଜାଣ୍ଡରର "ଭାରତ" ଆକ୍ରମଣ କଲାବେଳେ ମୁଁ ତାହା କୌଶଳକ୍ରମେ ସଂଗ୍ରହ କରିଥିଲି । ଯେପରି କୌଣସି ତ୍ରୁଟି ନ ରହେ ।"

"ଭାରତୀୟ ଶିଳ୍ପୀ କେବେ ତ୍ରୁଟି କରେନାହିଁ ମହାରାଜ ।"

× × ×

ସେଦିନ ମେଘଘେରା ଆକାଶରେ ଉଦାସ ଗୋଧୂଳି । ଅସ୍ତଗାମୀ ସୂର୍ଯ୍ୟଙ୍କର ଲାଲିମା ନିଷ୍ପ୍ରଭ । ଉଠାଉ ଶୁଦ୍ରକର ମନରେ କାରୁଣିକାର ସ୍ମୃତି ଜାଗିଉଠିଲା । ଦୀର୍ଘ ୨୦ ବର୍ଷ ପୂର୍ବେ ସେ କାରୁଣିକା ଠାରୁ ବିଦାୟ ନେଇ ଆସିଥିଲା ଗ୍ରୀକ୍ — ଗିରି ଗହ୍ୱରରେ ଭାରତୀୟ ତପସ୍ୱୀ ବୁଦ୍ଧଙ୍କ ଧ୍ୟାନାଲୋକ ପରି ନିଷ୍ପଲକ ସ୍ଥିର ମୂର୍ତ୍ତି ଖୋଦିତ କରିବା ପାଇଁ । କାରୁଣିକା — ଜୀବନର ସାଥି ତା'ର । ସେ ଅନ୍ୟମନସ୍କ ହୋଇଉଠିଲା ସେହି ଅନ୍ଧକାର ଭିତରେ ଗୋଟିଏ ନାରୀମୂର୍ତ୍ତି । ସେ — କାରୁଣିକା — । ଅଜାଣତରେ ତା'ର ସୁଦକ୍ଷ ଶିଳ୍ପୀହାତ ଥରିଉଠିଲା । 'ଏଲିଜେନ'ର ମୂର୍ତ୍ତି ଖୋଦିତ କରିବା ପରିବର୍ତ୍ତେ, ଆଙ୍କିଦେଲା ଦୀର୍ଘ ଅଜ୍ଞାତର କାରୁଣିକାର ଛବି । ଗ୍ରୀକ୍ ସାମ୍ରାଜ୍ଞୀ ଏଲିଜେନ—ଏବଂ ଭାରତୀୟ କଳାକାରର ପତ୍ନୀ କାରୁଣିକା ।

× × ×

'ଶିଳ୍ପୀ !'

'ମହାରାଜ !'

"ବୋଧହୁଏ ତୁମର ପ୍ରସ୍ତର ମୂର୍ତ୍ତି ଶେଷ ହୋଇଛି ?"

'ଆଜ୍ଞା ମହାରାଜ !'

( ମହାରାଜ ଛବି ଦେଖିବା ପରେ )

"କିନ୍ତୁ ଏ କ'ଣ କରିଛ ଶିଳ୍ପୀ ? ଏ କାହାର ମୂର୍ତ୍ତି ? ସାମ୍ରାଜ୍ଞୀ ଏଲିଜେନ୍ଙ୍କର ଏଲିଜେନ୍‌ର ଛବି ଆଙ୍କିବା ପରିବର୍ତ୍ତେ ତୁମେ ଆଙ୍କିଦେଇଛ ଜଣେ ଅନାମଧେୟ ନାରୀ ମୂର୍ତ୍ତି ? ଜାଣ ? ଏହାର ପରିଣାମ କି ଭୟାବହ ହୋଇପାରେ ?

"ଜାଣେ ମହାରାଜ ! କିନ୍ତୁ ...... ।"

"ତୋ'ର ଏତେ ସ୍ପର୍ଦ୍ଧା ? ଖର୍ବ ହୋଇ ଗ୍ରୀକ୍ ସମ୍ରାଟଙ୍କ ଆଦେଶ ଅବମାନନା କରିଛୁ ? ତୁମକୁ ମୃତ୍ୟୁ ବ୍ୟତୀତ ଅନ୍ୟ କିଛି ପୁରସ୍କାର ଦିଆଯାଇ ନପାରେ' ।

ରାଜପ୍ରାସାଦର ପ୍ରାଙ୍ଗଣ ସଂଲଗ୍ନ ସେହି ଧୂମ କାରାଗାର ପାର୍ଶ୍ୱରେ ଗୋଟାଏ ଯୋଡ଼ାଏ ନାଲି ଗୋଲାପ ଯେଉଁଠି ହସି ହସି ଲୋଟିପଡ଼ୁଥିଲେ ସେଇଠି ।

ସନ୍ଧ୍ୟାର ଅନ୍ଧାର ଯେତେବେଳେ ସେହି ନିର୍ମମ ପାଷାଣ ପ୍ରାଚୀରକୁ ସମ୍ପୂର୍ଣ୍ଣ ଗ୍ରାସ କରିଥିଲା ସେତିକବେଳେ ଜଣେ ଭାରତୀୟ କଳାକାରର ମୃତ୍ୟୁ — ଗ୍ରୀକ୍ ସମ୍ରାଟ ହେଲେକ୍‌ସଙ୍କ ଆଦେଶରେ ।

× × ×

ସେଦିନ ବିଦାୟୀ ଫଗୁଣର କଅଁଳ ଊଷା । ପ୍ରାଚୀ ଗଗନର ରକ୍ତିମ ଅରୁଣ ହଠାତ୍ ମେଘ ଛନ୍ନ ହୋଇଉଠିଲା । କ୍ଷଣକ ପାଇଁ ସମସ୍ତ ଜୀବଜଗତ ନୀରବ ନିସ୍ତବ୍ଧ ।

ଅଜନ୍ତାର ସମସ୍ତ ପ୍ରସ୍ତର ମୂର୍ତ୍ତି କ୍ଷଣକ ପାଇଁ ଥରିଉଠିଥିଲା । ସମସ୍ତ ପୁଷ୍ପର ସୁରଭି ବିଷାକ୍ତ । ସେଦିନ ଆଉ ମଧୁପର ମଧୁଗୁଞ୍ଜନ ଶୁଣାଗଲା ନାହିଁ । ଦୀପ ଲିଭି-ଗଲା । ବାସନ୍ତୀ ଲଗ୍ନର କଣ୍ଟକପୂର୍ଣ୍ଣ ଶୋଭା ମଧ୍ୟରେ ଲିଭିଗଲା ଭାରତ ଇତିହାସର ଜ୍ୱଳନ୍ତ ରତ୍ନପ୍ରଦୀପ— ଶୁଦ୍ରକ ।

× × ×

ଦିନ ପରେ ଦିନ ଗଡ଼ି ଗଡ଼ି ଧାଇଁ ଧାଇଁ ବରଷ ବିତିଗଲା । ଯେତେବେଳେ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ରାଜଧାନୀ ନିଦ୍ରିତ; ଠିକ୍ ସେତେବେଳେ ଶୁଦ୍ରକର ପ୍ରେତ ଆତ୍ମା ଆସେ, ରାଜବାଟୀର ଉଦ୍ୟାନରେ ଏକ ପ୍ରସ୍ତର ବେଦୀ ଉପରେ ଠିଆ ହୁଏ, କାନ୍ଦେ — କଥା କହେ— ଗ୍ରୀକ୍ କଥା — ସେଠାରେ ତା'ର ଅପମୃତ୍ୟୁର କଥା — ଏହିପରି ନିତି ପ୍ରତି ।

ସେଦିନ ଜ୍ୟୋତ୍ସ୍ନା ବିଧୌତ ରଜନୀ । ଆକାଶରେ ଦଶମୀ ଚନ୍ଦ୍ରର ଖିଲ୍ ଖିଲ୍ ହସ । ଆନନ୍ଦରେ ମତୁଆଲା ହୋଇ ରାଜଉଦ୍ୟାନରେ ଫୁଟିଉଠିଥିଲା ରଜନୀଗନ୍ଧା । ରାଣୀଙ୍କ ଏକାନ୍ତ ଅନୁରୋଧରେ ସମ୍ରାଟ ଚନ୍ଦ୍ରଗୁପ୍ତ ଉଦ୍ୟାନର ପ୍ରସ୍ତର ନିର୍ମିତ ପାବଚ୍ଛ ଶ୍ରେଣୀ ଉପରେ ଉପବେଶନ କରି ଉପଭୋଗ କରୁଥିଲେ ପ୍ରକୃତିର ବୈଚିତ୍ର୍ୟ । ଠିକ୍ ସେତିକବେଳେ ଶୁଦ୍ରକର ପ୍ରେତ ଆତ୍ମା ରାଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ପୂର୍ବକ ନିଜ ଜୀବନର ସମସ୍ତ ଘଟଣା ବର୍ଣ୍ଣନା କଲା । ପରିଶେଷରେ ତା'ର ଜୀବନର ଶେଷ ଭିକ୍ଷା ପ୍ରକାଶ କରିଥିଲା — "କାରୁଣିକାର ପ୍ରସ୍ତର ମୂର୍ତ୍ତି ଭାରତକୁ ଫେରାଇ ଆଣିବାକୁ ପଡ଼ିବ ।" ନଚେତ୍ ତା'ର ଜୀବନର ଶେଷ ଇଚ୍ଛା ଅପୂରଣୀୟ ହୋଇଯିବ । ତା'ପରେ ତା'ର ପ୍ରେତ ଆତ୍ମା ଶୁଭ୍ର ଜ୍ୟୋତ୍ସ୍ନା ଭିତରେ ହଜିଗଲା । ଆଉ ଥରକ ପାଇଁ ସେ ରାଜଉଦ୍ୟାନକୁ ଫେରି ନ ଥିଲା ।

ରାତି ପାହି ସକାଳ ହେଲା । ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଦରବାର ଦୁଃଖରେ ମ୍ରିୟ-ମାଣ କାହାର ମୁହଁରେ ଭାଷା ନାହିଁ । ସୁଦୂର ଗ୍ରୀକ୍‌ରେ ଜଣେ ଭାରତୀୟ କଳାକାରର

ଅପମୃତ୍ୟୁ । ଏହାର ପ୍ରତିଶୋଧ ନେବାକୁ ହେବ । ସମଗ୍ର ଗ୍ରୀକ୍ ସାମ୍ରାଜ୍ୟକୁ ପଦାନତ କରିବାକୁ ହେବ । ଆଉ ଶୂଦ୍ରକର ଶେଷ ଅନୁରୋଧ "କାରୁଣିକାର ପ୍ରସ୍ତର ମୂର୍ତ୍ତି ଭାରତକୁ ଆଣିବାକୁ ପଡ଼ିବ ।"

× × ×

'ଏ, ରଜନୀଗନ୍ଧା ! ରଜନୀଗନ୍ଧା ! ଶୁଣମ ଟିକେ' ।

'କିଏ ଗଙ୍ଗଶିଉଳି ?'

'ହଁ',

'କ'ଣ ମ ?'

'ଏଇ— କାରୁଣିକା କଥା ମ' କେଡ଼େ ପାଗଳ ସିଏ, ଏ—ଶୂଦ୍ରକ ପାଇଁ' ।

'ଆଚ୍ଛା ଗଙ୍ଗଶିଉଳି ! କାରୁଣିକା ନିତିପ୍ରତି ଆସି ଏହି ରାଜଉଦ୍ୟାନର ପ୍ରସ୍ତର ବେଦୀ ଉପରେ କ'ଣ କରେ' ?

'ଅପେକ୍ଷା କରେ' ।

'କାହାକୁ ?'

'ଶୂଦ୍ରକକୁ'

'ଶୂଦ୍ରକ କ'ଣ ଫେରିବ ?'

"ନା, ସେ ଆଉ ଫେରିବନି । କିନ୍ତୁ ତା'ର ପ୍ରେତଆତ୍ମା ଏହି ପ୍ରସ୍ତର ବେଦୀ ଉପରେ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କୁ ଜୀବନର ସବୁକଥା କହିଥିଲା । ତେଣୁ କାରୁଣିକା ଭାବେ, କେବେ ଯଦି ଭୁଲରେ ଶୂଦ୍ରକର ପ୍ରେତ ଆତ୍ମା ଏଇଟିକି ଫେରିଆସେ, ତେବେ ଥରକ ପାଇଁ ଦେଖା ହୋଇଯିବ ।"

'ଓଃ ! କି ପ୍ରତୀକ୍ଷା'

× × ×

'ସେନାପତି, ଉଦାଯ୍ଜୀ ସିଂ !

'ମହାରାଜ'

କାଲି ପ୍ରଭାତରେ ଗ୍ରୀକ୍ ଅଭିଯାନ କରିବାକୁ ପଡ଼ିବ । ମୋତେ ଶୂଦ୍ରକର ଶେଷ ଅନୁରୋଧ ରକ୍ଷା କରିବାକୁ ପଡ଼ିବ । ଯାହାର ମହାଣ ମୂଳରେ ଅଜନ୍ତାର ଗିରି ଗହ୍ୱରରେ ଫୁଟିଉଠିଛି ଭାରତୀୟ କଳା, ତା'ର ଅନୁରୋଧ ରକ୍ଷା କରିବାକୁ ପଡ଼ିବ । ତେଣୁ ସମଗ୍ର ସୈନ୍ୟମାନଙ୍କୁ ଆଦେଶ ଦିଅ, କାଲି ପ୍ରଭାତ ସୁଦ୍ଧା ସଜ୍ଜିତ ହେବାକୁ । ଗ୍ରୀକ୍ ସାମ୍ରାଜ୍ୟକୁ ଧ୍ୱଂସ କରି ସେଥିରୁ ଉଦ୍ଧାର କରିବାକୁ ହେବ ବହୁମୂଲ୍ୟ ରତ୍ନ — କାରୁଣିକାର ଶବ ।'

"ଯେ ଆଜ୍ଞା ମହାରାଜ" ।

ସେଦିନ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ରାଜଧାନୀ ଲୋକାରଣ୍ୟ । ସମ୍ରାଟଙ୍କ ଜୟଗାନରେ ଆକାଶ ନିନାଦିତ । ଘୋଡ଼ାଙ୍କର ଖୁରାଘାତରେ ଆକାଶ ଧୂସରିତ । ଅଭିଯାନ — ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ଅଭିଯାନ — ସାଗରର ସୀମାହୀନ ବକ୍ଷ ଉପରେ ଭାସି ଚାଲିଲା ଚନ୍ଦ୍ରଗୁପ୍ତଙ୍କ ଅଗଣିତ ସମରାଭିଳାଷୀ ଯୋଦ୍ଧାବୃନ୍ଦଙ୍କର ପୋତ ।

ଘୋର ଯୁଦ୍ଧର ଅବସାନ ହେଲା । ଗ୍ରୀକ୍ ସମ୍ରାଟ ହେଲେକ୍ସ ସମ୍ପୂର୍ଣ୍ଣରୂପେ ପରାଜିତ । ବିଜୟ ଗୌରବ ।

ବିଜେତା ସୈନ୍ୟ ଯୁଦ୍ଧର କ୍ଷତବିକ୍ଷତକୁ ଫୁତ୍କାରରେ ଉଡ଼ାଇଦେଇ ଫେରୁଥିଲେ ସ୍ୱଦେଶକୁ—ସାଗରର ଢେଉଜାଲ ବୁକୁ ଉପରେ ଯୁଦ୍ଧ ପୋତକୁ ମେଲାଇ ଦେଇ । ମନରେ ମନଫୁଲାଣିଆ ଗୀତ । ସାଙ୍ଗରେ ଥିଲା କାରୁଣିକାର ପ୍ରସ୍ତର ଶବ ।

ଦିନ ପରେ ଦିନ ଗଡ଼ିଚାଲିଲା । ସେଦିନ ଥିଲା ଶ୍ରାବଣର ପ୍ରଥମ ସଂଧ୍ୟା । ଆକାଶରେ ଦେଖାଗଲା ଅଚାନକ ବତାସର ଘୁରୁୟା । ସମଗ୍ର ସୈନ୍ୟ ପୋତରେ ଖେଳିଗଲା ବିଷାଦର ଢେଉ । ବତାସର ରୂପ ବଦଳିବାକୁ ଲାଗିଲା । ସୈନ୍ୟ ପୋତ ବତାସର ଧକ୍କାରେ ବେଶୀ ସମୟ ରହିବା ଅସମ୍ଭବ ଥିଲା ପୋତ ଭିତରେ ପାଣି ପଶିବାକୁ ଆରମ୍ଭ କଲା କିନ୍ତୁ କାରୁଣିକାର ପ୍ରସ୍ତର ମୂର୍ତ୍ତିକୁ ରକ୍ଷା କରିବାକୁ ପଡ଼ିବ । ନଚେତ୍ କାରୁଣିକାର ପ୍ରସ୍ତର ମୂର୍ତ୍ତି ପାଇବ ସଲିଳ ସମାଧି । ସମ୍ରାଟ ଚନ୍ଦ୍ରଗୁପ୍ତ ନୀରବ । ଏହି ଦୁଃଖରେ ପୋତର ସୈନ୍ୟମାନେ ସାଗରର ଅତଳ ଗର୍ଭକୁ ଲମ୍ଫ ପ୍ରଦାନ କରି ଆତ୍ମ ବିସର୍ଜନ କଲେ । ପୋତର ଓଜନ କମିଗଲା । ଜ୍ୟୋତ୍ସ୍ନା ରାତିରେ କହିଁ କଳକାର ହସ ନେଇ ଫେରିଲା କାରୁଣିକା ।

ଶତାବ୍ଦୀ ପରେ ଶତାବ୍ଦୀ ବିତିଯାଇଛି । ଏବେସୁଦ୍ଧା ଅଜନ୍ତାର ଗିରିଗହ୍ୱରରେ କାରୁଣିକାର ମୂର୍ତ୍ତି ଦେଖିବାକୁ ମିଳେ । ଯେତେବେଳେ ଅନ୍ଧକାର ମାଡ଼ିଆସେ, ଅଦୂର ଆମ୍ର ସହକାରର ଏକ ଭଗ୍ନ ଶାଖାରୁ ଗୋଟିଏ ବିରହିଣୀ କପୋତ ବିଳପି ଉଠେ, ସେତିକବେଳେ ଗୋଟିଏ ନାରୀମୂର୍ତ୍ତି ଆବିର୍ଭାବ ହୁଏ, ଅଜନ୍ତାର ଗିରିଗହ୍ୱର ମୁଖରେ । ସେ କାହାକୁ ହାତଠାରି ଡାକେ— କଥା କହେ । କିନ୍ତୁ ଅବଗୁଣ୍ଠନ ମୁକୁଳା କରିଁ ଲ ଶୀତାଂଶୁର ଧୈର୍ଯ୍ୟହୀନ ଝଲକରେ ସେ ହସେନ ।

# ପ୍ରତ୍ୟାବର୍ତ୍ତନ

ବାସନ୍ତୀ ସନ୍ଧ୍ୟାର ନୀରବ ପରିବେଶ । ପଶ୍ଚିମ ଆକାଶରେ ଦିନମଣି ଅସ୍ତ ହୋଇଗଲେଣି । କିନ୍ତୁ ଅସ୍ତମିତ ସୂର୍ଯ୍ୟଙ୍କର କନକ କିରଣରେ ପଶ୍ଚିମ ଦିଗ୍‌ବଳୟ ରଞ୍ଜିତ । ପୂର୍ବାକାଶରେ ଅଳ୍ପଜ୍ୟୋତି ତାରା କେତୋଟି ଅଭିଆଡ଼ି ଝିଅଙ୍କପରି ଜୁଳୁ ଜୁଳୁ କରି ଚାହିଁଲେଣି । ବଉଦ ଫାଙ୍କରେ ଅଷ୍ଟମୀ ଚନ୍ଦ୍ର ଉଙ୍କି ମାରିଲେଣି । ଆକାଶରେ ଚାଲିଛି ଖଣ୍ଡ ଖଣ୍ଡ ମେଘମାନଙ୍କର ପଟୁଆର । ଦୀର୍ଘ ଦିନ ପ୍ରବାସ ଅବସ୍ଥାନ ପରେ ବୋଧହୁଏ ସେମାନେ ଗୃହାଭିମୁଖେ ପ୍ରତ୍ୟାବର୍ତ୍ତନ କରୁଛନ୍ତି । ନୀଡ଼ ବାହୁଡ଼ା ପକ୍ଷୀମାନଙ୍କ କାକଳୀରେ ମୁଖରିତ ହେଉଥିବା ଆକାଶ ଶାନ୍ତ ପଡ଼ିଆସିଲାଣି । କେତେବେଳେ କେମିତି ଚକ୍ରବାକର ସଦ୍ୟ ବିରହ ଜନିତ କ୍ରନ୍ଦନ ଧ୍ୱନି ଆକାଶର ନୀରବତା ଭଙ୍ଗ କରୁଛି । ଦକ୍ଷିଣ ଦିଗରୁ ବହିଆସୁଛି ମୃଦୁମନ୍ଦ ହିଲ୍ଲୋଳ । ସାଙ୍ଗରେ ନେଇଆସୁଛି ଦୂର ଆମ୍ର ନିକୁଞ୍ଜରୁ ଆମ୍ର ବଉଳର ସୁରଭି ଏବଂ ବାସନ୍ତୀ କୋକିଳର କୋମଳ କୁହୁତାନ । ସତେ ବା ଏମାନେ ବାସନ୍ତୀ ସଂଧ୍ୟାର ଆଗମନକୁ ସ୍ୱାଗତ ଜଣାଇବା ପାଇଁ ପ୍ରସ୍ତୁତ ।

ଗହ୍ମାର ବିଲର ଅଙ୍କାବଙ୍କା ଚଲାବାଟ, କାନ୍ଧରେ ଗଣ୍ଠିଲି ପକାଇ କିଏ ଜଣେ ଚାଲିଛି । ଚାଲିଛି ତା'ର ଜନ୍ମମାଟିରେ ଏ ମାଟିରେ ଚାଲିବାର ସ୍ପୃହା ଆଜି ତା'ର ଅପରିସୀମ । ଦୀର୍ଘ ପାଞ୍ଚବର୍ଷ ପରେ ଆଜି ସେ ଏ ମାଟି ସ୍ପର୍ଶ କରୁଛି । ଏଇ ତା'ର ଗାଁ' ମାଟି, ଜନ୍ମ ଭୂଇଁ । ଆଗରେ ଦିଶୁଛି ତା'ର ପଲ୍ଲୀ ଗାଁ' । ନଈ, ତୋଟା, ମଶାଣି ସେଇ କେଉଁକାଳର ପଲ୍ଲୀ ଗାଁ' ସତେ ? କିଏ କହିବ ତା'ର ଇତିହାସ ? କେତେ ଲୋକ ଜନ୍ମ ହୋଇ, ଏଇ ଗାଁ'ରେ ହସି ଖେଳି, ଆନନ୍ଦ ନିରାନନ୍ଦ ଭିତରେ ଜୀବନ ଅତିବାହିତ କରି ମାଟିରେ ମିଶିଲେଣି । ତା'ର ହିସାବ ଏଇ ନଈ, ତୋଟା, ମଶାଣି ହୁଏତ ରଖିଥିବେ ? କେତେ ରାଜା ସମ୍ରାଟଙ୍କର ଶାସନ କାଳ ଗଲାଣି, ତା'ର ମୂକସାକ୍ଷୀ ରୂପେ ଏଇ ନଈ, ତୋଟା, ମଶାଣିହିଁ ପଡ଼ିରହିଛନ୍ତି ଏବଂ ଏହିପରି ପଡ଼ିରହିଥିବେ ।

॥ ହେମନ୍ତ କୁମାର ଷଡ଼ଙ୍ଗୀ ॥
ଦ୍ୱିତୀୟ ବାର୍ଷିକ (କଳା)

ଏ ଗାଁ'ର ପାଣିପବନ ସହିତ କହ୍ନେଇ ନିବିଡ଼ ଭାବେ ପରିଚିତ । ଏ ଗାଁ ତୋଟାରେ ସାଙ୍ଗମାନଙ୍କ ସହିତ କେତେ ଋଜଦୋଳି ଖେଳିଛି । ଏ ଗାଁ ପୋଖରୀରୁ କେତେ କଇଁଫୁଲ ତୋଳିଛି । ଏ ଗାଁ ତୋଟାମାଳରେ କେତେ ବୁଲିଛି । ଏ ଗାଁ ନଈ କୂଳେ କେତେ ସଂଧ୍ୟା ଅତିବାହିତ କରିଛି । ଏଇ ତା'ର ଗାଁ, ଯେଉଁଠି ସେ କହ୍ନେଇ ଦେଇଛି ଜୀବନର ଦୀର୍ଘ ୨୦ ବର୍ଷ ହସ ଖେଳ, ଦୁଃଖ–ସୁଖ ଆନନ୍ଦ ନିରାନନ୍ଦ ଭିତରେ ।

ଗ୍ରାମଦେବତୀଙ୍କ ମନ୍ଦିରରୁ ଘଣ୍ଟ ଘଣ୍ଟା ଧ୍ୱନି ଶୁଭିଲାଣି । ସଂଧ୍ୟା ଆଳତି ହେଲାଣି । ଘଣ୍ଟ ଘଣ୍ଟା ଶବ୍ଦ ଶୁଣି ଗ୍ରାମର ବୃଦ୍ଧ-ବୃଦ୍ଧାମାନେ ଗ୍ରାମଦେବତୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରିଲେଣି । ସଂଧ୍ୟା ସମୟରେ ଦେବାଳୟର ଘଣ୍ଟ ଘଣ୍ଟା ଶବ୍ଦ ଭଗବତ ଟୁଙ୍ଗୀର ଏକ ସଂକେତ ମାତ୍ର । ଗାଁ ଭାଗବତ ଘରେ ପୁରାଣ ଶୁଣିବାକୁ ଅନେକ ରୁଣ୍ଡ ହେବେଣି । ଗ୍ରେଡ଼ ପିଲାମାନେ 'ରାଜାପୁଅ ମନ୍ତ୍ରୀଝିଅ', 'ବୁଢ଼ୀ ଅସୁରୁଣୀ' କଥା ଶୁଣିବା ପାଇଁ ଆଈ ବୁଢ଼ୀକୁ ଘେରିବସିବେଣି । ପଲ୍ଲୀବଧୂ ଅବଗୁଣ୍ଠନ ଟାଣି ସ୍ୱାମୀ ସନ୍ତାନଙ୍କର ମଙ୍ଗଳ କାମନା କରି ବୃନ୍ଦାବତୀଙ୍କ ନିକଟରେ ସଂଜ ସଳିତା ଜାଳିବେଣି । କେଉଁ ତରୁଣୀ ବିଦେଶାଗତ ସ୍ୱାମୀଙ୍କର ଆଶୁ ପ୍ରତ୍ୟାବର୍ତ୍ତନ ପାଇଁ ଗ୍ରାମଦେବତୀଙ୍କୁ ସଜଳ ନୟନରେ ବିନମ୍ର ପ୍ରଣତି ଜଣାଉଥିବ ।

ଗୁରେଇ ମଧ୍ୟ ସଂଜ ସଳିତା ଜାଳି, ତା'ର ବିଦଗ୍ଧ ପ୍ରାଣର ଆକୁଳ ପ୍ରାର୍ଥନା ଜଣାଉଥିବ ଏବଂ ସ୍ୱାଭାବିକ ଭାବରେ ତା'ର ସ୍ୱାମୀଙ୍କର ଆଶୁ ପ୍ରତ୍ୟାବର୍ତ୍ତନ ଏବଂ ମଙ୍ଗଳ କାମନା କରୁଥିବ ।

× × ×

ଗୁରେଇ କଥା ଭାବିବା କ୍ଷଣି କହ୍ନେଇର ଶରୀରରେ ଏକ ଶିହରଣ ଖେଳି-ଗଲା । ଗୁରେଇ ତା'ର କିଏ ? କାହିଁକି ଗୁରେଇ ପ୍ରତି ତା ପ୍ରାଣରେ ଏପରି ପ୍ରତିଟିସ୍ପୃହ ? ଗୁରେଇ ତା'ର ସବୁକିଛି । ତା'ର ତପ୍ତ ହୃଦୟର ଶୀତଳ ଚନ୍ଦନ ସେ । ତା ଚଲାପଥର ସାଥୀ । ତା'ର ପ୍ରିୟତମା ସହଧର୍ମିଣୀ, ଯାହା ସହିତ ସେ ଅତିବାହିତ କରିଥିଲା ଜୀବନର ଅଳ୍ପ କେତୋଟି ଦିନ ।

ଆଖି ଆଗରେ ନାଚିଗଲା ତା'ର ଜୀବନ ଇତିହାସର କେତୋଟି ପୃଷ୍ଠା

× × ×

ଯେତେବେଳେ ସେ ଥିଲା ୨୦ ବର୍ଷର ଯୁବକ, ବାପ ମାଆଙ୍କର ଏକମାତ୍ର ନୟନ ପିତୁଳି; ବାପା ତା'ର ଥିଲା ଗରିବ ଚାଷୀ । ପିତୃ ଅର୍ଜିତ ଦୁଇ ଏକର

ସଂପତ୍ତିକୁ ଚାଷ କରୁଥିଲା । ବାପା ସାଙ୍ଗରେ ମାଟିରେ ମିଶି କାମ କରୁଥିଲା କହ୍ନେଇ । ମୁଣ୍ଡ ଝାଳ ଭୂଇଁରେ ମାରୁଥିଲା । ମାଟି ବକ୍ଷରୁ କାଢି ଆଣୁଥିଲା ସୁନାର ଫସଲ । କ୍ଷୁଦ୍ର ପରିବାର ତାଙ୍କର ସୁଖରେ ଚଳିଯାଉଥିଲା ।

ଜୀବନର ଏକୋଇଶିଟି ବସନ୍ତ ଅତିକ୍ରମ କରିବା ପରେ ଆରମ୍ଭ ହୁଏ ତା'ର ଜୀବନର ଉତ୍ଥାନ ପର୍ଯ୍ୟାୟ । ଘୂରି ବୁଲିଥିଲା ସେ ରଙ୍ଗୀନ ଦୁନିଆଁରେ । ବିବାହ ବନ୍ଧନରେ ତାକୁ ଛନ୍ଦି ଦିଆଗଲା ଏକ ପଲ୍ଲୀ ସରଳା, ନିରୀହା ଯୁବତୀ ସହିତ । ସେ ହେଉଛି ଗୁରେଇ ।

ବିବାହର ଠିକ୍ ଦୁଇମାସ ପରେ ଭାଗ୍ୟାକାଶକୁ ତା'ର ଆଛନ୍ନ କରି ଦେଖାଗଲା ବଜ୍ର ବିଦ୍ୟୁତମୟ କୃଷ୍ଣମେଘ । ତା'ର ବୈବାହିକ ଜୀବନର ସୁଖ ଦୁଃଖ ଦେଖିବା ପାଇଁ ବାପ ମାଆ ତା'ର ଅପେକ୍ଷା କରିପାରିଲେନି । ହଇଜା ରୋଗରେ ତାଙ୍କର ହେଲା ଅକାଳ ବିୟୋଗ । ଆଗ ପଛ ହୋଇ ଦୁହେଁ ସଂସାରରୁ ବିଦାୟ ନେଲେ ।

ସମାଜର ନିୟମ, ଜାତି ପ୍ରଥା ମାନି କହ୍ନେଇ ବାପ ମା'ଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କଲା । ତାହା ପୁଣି ପଡ଼ୋଶୀ ହରିକକାଙ୍କ ପରାମର୍ଶ ଓ ପରିଚାଳନା କ୍ରମେ । ଅନ୍ତ୍ୟେଷ୍ଟିକ୍ରିୟାର ଖର୍ଚ୍ଚ ବହନ କରି କହ୍ନେଇର ପିତୃ ସଂପତ୍ତିକୁ ବନ୍ଧକ ରଖିଲେ ହରିକକା । କଲିକତା ଯାଇ ଚାକିରି କରି ଋଣ ପରିଶୋଧ କରିବାକୁ ପରାମର୍ଶ ଦେଲେ ହରିକକା ସରଳ ହୃଦୟ ଯୁବକ କହ୍ନେଇ । ତେଣୁ ସେ ଗଲା ସୁଦୂର କଲିକତା ଋଣ ପରିଶୋଧ କରିବା ପାଇଁ । ସେ ଯାଇଥିଲା ଅନେକ କିଛି ଆଶା ଓ ଆକାଂକ୍ଷା ନେଇ । କଲିକତା ଯାଇ ଚାକିରି କରି ଋଣ ପରିଶୋଧ କରିବ । ପିତୃ ସମ୍ପତ୍ତିକୁ ସେ ମୁକୁଳାଇ ଆଣିବ । ପୁନଃପରି ଚାଷ କରିବ । ମାଟି ବକ୍ଷରୁ ଫେରି କାଢି ଆଣିବ ସୁନା ଫସଲ । ଆଉ ତା ସହିତ ସହଯୋଗ କରିବ ଗୁରେଇ, ତା'ର ମାନସ କାବ୍ୟର ନାୟିକା । ତା'ରି ସାଙ୍ଗେ କଟେଇଦେବ ଅସରନ୍ତି ଦିନ । ତା'ରି ମୁହଁକୁ ଚାହିଁ ସେ ଭୁଲିଯିବ ଜୀବନର ସବୁ ଦୁଃଖ, କଷ୍ଟ, କ୍ଳାନ୍ତି, ବେଦନା ।

ଗୁରେଇ ଠାରୁ, ଗାଁ ମାଟିଠାରୁ ବିଦାୟ ନେଇ ସେ ଯାଇଥିଲା କଲିକତା । ଦୁର୍ଭାଗ୍ୟ ଏକାକୀ ଆସେନାହିଁ । କଲିକତାରେ ଏକ ମିଥ୍ୟା ଚୋରି ମାମଲାରେ ସେ ଗଲା ଜେଲ । ଦୀର୍ଘ ପାଞ୍ଚବର୍ଷ ତାକୁ କାରାବରଣ କରିବାକୁ ପଡ଼ିଲା ।

ପାଞ୍ଚବର୍ଷ ପରେ ! ଆଜି ସେ ଫେରିଆସୁଛି ତା'ର ଜନ୍ମଭୂମିକୁ । ଆଜି ସେ କାରାମୁକ୍ତ ।

× × ×

ଆଜିର ସନ୍ଧ୍ୟାରେ ଦୀର୍ଘ ପାଞ୍ଚବର୍ଷର ବିଚ୍ଛେଦ ପରେ ମିଳନ ହେବ ତା'ର ଗୁରେଇ ସାଥିରେ । ଗୁରେଇ ଦୀର୍ଘ ପାଞ୍ଚବର୍ଷ କଟାଇଥିବ ଏକାକୀ ଜୀବନ । କେତେ ଯେ ମଧୁର

ସନ୍ଧ୍ୟା ଅନ୍ତବାକ୍ତ କରିଥିବ ସଜଳ ନୟନରେ । କିନ୍ତୁ ଦୀର୍ଘ ପାଞ୍ଚବର୍ଷର ଅନେକ ମଧୁର ସଂଧ୍ୟା ସେ ଅନ୍ତବାକ୍ତ କରିଥିଲା କାରାଗାରର ସେହି ଅନ୍ଧକାର ପ୍ରକୋଷ୍ଠ ମଧ୍ୟରେ । ସେ ସମସ୍ତ ଦୁଃଖ ଆଜ କହ୍ନେଇଁ ଭୁଲିଯାଇଛି । କାରଣ ସେ ଆଜ ମୁକ୍ତ । ଆଜର ସଂଧ୍ୟାରେ କିଏ ଘରେଇ ତାକୁ ପାଗ୍ରେଟି ନେବ ! ତା'ର ବନ୍ଦଗ୍ରଧ ପ୍ରାଣର କେଉଁପଦ କଥା କହି ଅଭିମାନ କରି ବସିବ ! ପୁଣି ପାଗ୍ରେଟି ନେବ । ଏହିପରି ଭାବନା ସ୍ରୋତରେ ଭାସିଚାଲିଛି କହ୍ନେଇଁ ।

ହଠାତ୍ ତା'ର ଭାବନା ଜୁଆରରେ ଭଟ୍ଟା ପଡ଼ିଗଲା ଯେତେବେଳେ କୁକୁର ଦୁଇଟା ଭୁକିଉଠିଲେ । କେତେବେଳେ ସେ ଆସି ଗାଁ ମୁଣ୍ଡ ଠାକୁରାଣୀଙ୍କ ମନ୍ଦିର ନିକଟରେ ପହଞ୍ଚିଗଲାଣି, ତାକୁ ଜଣାନାହିଁ । ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ଗ୍ରାମ ଭିତରକୁ ପାଦ ପକାଇଲା କହ୍ନେଇଁ । ତାକୁ କିପରି ନୂଆ ନୂଆ ଜଣାଗଲା ।

ଆଖି ଆଗରେ ତା'ର ନାଚିଗଲା ବିଗତ ଦିନର ଏକ ଅଭୁଲା ସ୍ମୃତି । ସେ ଦିନ ଏମିତି କୁକୁର ଭୁକିଥିଲେ, ଯେଉଁଦିନ ପାହାନ୍ତାରେ ଠାକୁରାଣୀଙ୍କ ମନ୍ଦିର ନିକଟରେ ଘରେଇ ତାକୁ ବିଦାୟ ଦେଇଥିଲା ତା ପାଦତଳେ ମୁଣ୍ଡ ଲଗାଇ । ଆଖିରୁ ତା'ର ଝରିଆସୁଥିଲା ଅବାରିତ ଅଶ୍ରୁଧାରା । କିଛି କହିବା ପାଇଁ ଓଠ ଦଫାଳ ତା'ର ଥରି ଉଠିଥିଲା । କିନ୍ତୁ କିଛି କହିପାରି ନ ଥିଲା । ସେ ଦିନର, ସେ ବିଦାୟକାଳୀନ ମଳିନ ମୁଖମଣ୍ଡଳଟି ଆଜ ତା'ର ମନେପଡ଼ିଯାଉଛି । କହ୍ନେଇଁ ପାଇଁ ତା ପ୍ରାଣ ବିକଳ ହୋଇ ଉଠିଥିଲା । ସମବେଦନାରେ ଆଖିପତା ଓଦା ହୋଇ ଆସିଲା କହ୍ନେଇଁର ।

କହ୍ନେଇଁ ଚାଲିଛି ଗା ଦାଣ୍ଡରେ । କେତେ ଚିହ୍ନା ଲୋକଙ୍କୁ ଦେଖୁଛି । ସମସ୍ତଙ୍କୁ ସେ ପିଲାଦିନୁ ଦେଖିଆସିଛି । ସମସ୍ତଙ୍କୁ ସେ ଜାଣେ । କିନ୍ତୁ ଆଜ କାହିଁକି ତାକୁ କେହି ଚିହ୍ନି ପାରୁନାହାନ୍ତି ? ତା'ର ଶାରୀରିକ ପରିବର୍ତ୍ତନ ଘଟିଛି । ସେ ଆଉ ପୂର୍ବ କହ୍ନେଇଁ ନୁହେଁ । ସେ ହେଉଛି ଦୀର୍ଘ ପାଞ୍ଚବର୍ଷ କାରାଦଣ୍ଡ ବରଣ କରିବା ପରେ ଏକ ମୁକ୍ତ କଏଦୀ ।

ସମସ୍ତେ ଯାଉଛନ୍ତି । କେବଳ ସଂଦେହଜନକ ଦୃଷ୍ଟି ନିକ୍ଷେପ କରି ପୁଣି ଯେ ଯାହା ବାଟରେ ଚାଲିଯାଉଛନ୍ତି । କାହାକୁ ପଦେ ପଚାରିବାକୁ କହ୍ନେଇଁ ସାହାସ କରି ପାରୁନି । ତାକୁ କିପରି ଖାପଛଡ଼ା ବୋଧ ହେଲା । ତଥାପି ସେ ଚାଲିଥାଏ ।

ଗାଁ ମଝିରେ ଭାଗବତ ଘର । ତା ଆରପଟେ ପଡ଼ିବ ତା'ର ଘର, ଯେଉଁ ଘରେ ସେ ପିଲାଦିନୁ ବଢ଼ିଆସିଥିଲା । ଯେଉଁ ଘରର ଆକର୍ଷଣରେ ସେ ଚାଲିଆସିଛି ସୁଦୂର କଲିକତାରୁ । କିଛି ବାଟ ଯିବା ପରେ ଭାଗବତ ଘର ପଡ଼ିଲା । କେତେ ଲୋକ ବସିଛନ୍ତି ଭାଗବତ ଘରେ । କାହାରି ପ୍ରତି ଦୃଷ୍ଟି ନ ଦେଇ କହ୍ନେଇଁ ଚାଲିଲା ତା ଘର ଅଭିମୁଖେ । କହ୍ନେଇ ଯାଇ ଠିଆ ହେଲା ତା ଘର ସାମନାରେ ।

କାନ୍ଧରୁ ତା'ର ଖସିପଡ଼ିଲା ଗଣ୍ଠିଲି । ମୁଣ୍ଡ ତା'ର ଝିମିଝିମି ହୋଇଗଲା । ପୃଥିବୀ ତା ଗୃହପାଖରେ ଘୂରିବା ପରି ତାକୁ ବୋଧହେଲା । ତାକୁ ସବୁ ଅନ୍ଧାର ଦେଖାଗଲା । ନିଜ ଆଖିକୁ ସେ ବିଶ୍ୱାସ କରିପାରିଲା ନାହିଁ । ଥରେ ଗୃହଆଡ଼କୁ ଚାହିଁଲା । ନା ! ସବୁ ତ ଯେମିତି ଥିଲା ସେମିତି ଅଛି । କେଉଁଠି କିଛି ପରିବର୍ତ୍ତନ ହୋଇନି । କିନ୍ତୁ ତା ଘରର ଏ ପରିଣତି କାହିଁକି ? ଘର ଆଗରେ ତା'ର ବଉଳ ଗଛ, ଭଙ୍ଗା କୂଅ ଠିକ୍ ସେମିତି ଅଛି । ନଡ଼ିଆ ଗଛ ଦୁଇଟା ପ୍ରତିଦ୍ୱନ୍ଦିତା କରି ବଢ଼ୁଛନ୍ତି । ଏଇ ଦୁଇଟା ନଡ଼ିଆ ଗଛ ସେ ନିଜ ହାତରେ ପକାଇଥିଲା । ସବୁ ସେମିତି ଅଛି । କିନ୍ତୁ ତା ଘରର ଛପର ନାହିଁ । କାନ୍ଥ ସବୁ ଭାଙ୍ଗିଗଲାଣି । ଦାରଭଙ୍ଗା କାନ୍ଥ ଉପରେ ଘାସ ଉଠିଲାଣି । ଘର ଭିତ ବଣ ହୋଇ ପଡ଼ିଛି ।

ଏଠି ଆଉ ମଣିଷ ରହୁନାହିଁ । ସାପ ବେଙ୍ଗଙ୍କର ଏ ବାସସ୍ଥାନ ହୋଇଛି । ଗୁରେଇ ଆଉ ଏଠି ରହୁନି । ଗୁରେଇ; ଯାହାପାଇଁ ତା'ର ଏତେ ଶ୍ରମ, ଯାହାକୁ ଘେନି ସେ ଗଢ଼ିଥିଲା ଆଶାର ମିନାର । କିନ୍ତୁ ସେ ଆଶାର ମିନାର ଆଜି ତା'ର ଭାଙ୍ଗି ଚୂନା ହୋଇଯାଇଛି । ସମସ୍ତ ରଙ୍ଗୀନ ଆଶା ଆଜି ତା'ର ବିଫଳ ହୋ'ଇଛି ।

ପାଟିରୁ ତା'ର କଥା ବାହାରିଲା ନାହିଁ । ପାଦ ଚଳିଲା ନାହିଁ । ସେଇ ଭଙ୍ଗା ଘରଆଡ଼େ ଏକ କରୁଣ ଦୃଷ୍ଟି ନିକ୍ଷେପ କରି ଠିଆ ହୋଇଥାଏ କିଛିକ୍ଷଣ ।

ଶୁକ୍ଳପକ୍ଷର ଅଷ୍ଟମୀ ଚନ୍ଦ୍ରଙ୍କ ଶୁଭ୍ର କିରଣରେ ଗୃହଆଡ଼ ଆଲୋକିତ । ଦକ୍ଷିଣା ପବନର ମୃଦୁ ସ୍ପର୍ଶରେ ଗଛପତ୍ର ଦୋହଲି ଉଠୁଛି । ଶୁଭ୍ର ଚନ୍ଦ୍ର କିରଣ ପଡ଼ି, ଦକ୍ଷିଣା ପବନର ମୃଦୁ ସ୍ପର୍ଶ ପାଇ ନଡ଼ିଆ ପତ୍ର ଦୋଳାୟିତ ହେଉଛି । ସତେକି ହାତ ହଲାଇ କହୁଛି, "ନାହିଁ, ନାହିଁ ! ତୋର ଏଠି ସ୍ଥାନ ନାହିଁ । ତୁ ଏଠି କେହି ନୁହେଁ ।"

ଆଜି ତାକୁ ସମସ୍ତେ ସମୂହ ଭାବରେ କରୁଛନ୍ତି — "ପ୍ରତ୍ୟାଖ୍ୟାନ" ।

# ମୁକ୍ତ ବିହଙ୍ଗ

ସୂର୍ଯ୍ୟ କେତେବେଳୁ ଅସ୍ତ ଗଲେଣି ।

ତୋଟା ଭିତରୁ ବାଲି ଉପରକୁ ମେଞ୍ଚା ମେଞ୍ଚା ଅନ୍ଧାର ଧୂଆଁ ଲଥ ହୋଇ ମାଡ଼ିଆସୁଛି ।

ଦିନକର କାମ ସାରି ବାଲିରୁ ପ୍ରାୟ ସମସ୍ତେ ଚାଲି-ଗଲେଣି ।

ବାଲି ଉପର ନିଗୁଟିଆ-ଶୁନ୍‌ଶାନ୍ ।

ସେଇ ମୁହଁ ଅନ୍ଧାର ଭିତରେ ପଛକୁ ରହିଛନ୍ତି ଦୁଇଟି ଲୋକ— ଗୋଟିଏ ପୁରୁଷ ଆଉ ଗୋଟିଏ ସ୍ତ୍ରୀ ।

ବିପରୀତ ଦିଗରୁ ଚାଲିଆସୁଛନ୍ତି ଜଣେ ଆଉଜଣକ ପାଖକୁ । ହୋଇ— ସେ ଆମ୍ବଗଛ ମୂଳେ ଏକାଠି ହେଲେ । ତା'ପରେ ··· ··· ଅନ୍ଧାର, ଖାଲି ଅନ୍ଧାର । ତା'ର ଭିତରେ ଦୁହେଁ ମିଶିଗଲେ ।

× × ×

ବାଲି ଗହ୍ୱର । ତୋଟାମାଳ । ତା'ପରେ ଗାଁ ସେ ଗାଁ'ର ନାଁ ଅଛି । ବଡ଼ ସାନ, ଉଚ୍ଚ ନୀଚ କେତେପ୍ରକାରର ଲୋକେ ସେଠି ଅଛନ୍ତି । ତା ପାଖକୁ ଟିକିଏ ଦୂରରେ ଯେଉଁ ଗୋଟିଆ ଗୋଟିଆ କୁଡ଼ିଆ ହୋଇ ବସ୍ତି ଟି, ତା'ର ନାଁ ନାହିଁ । ଏଇ ଗାଁ ସାଙ୍ଗରେ ତା'ର ସତ୍ତ୍ୱ ଲୋପପାଇଛି ।

ସେଇ ବସ୍ତିରେ ସମସ୍ତଙ୍କର ଖାଣ୍ଟି ମାଟି ଘର । ସେଠି ସମସ୍ତେ ସମାନ, କାରଣ ସେମାନେ ମଣିଷ । ଖଟି ଖାଇବା ସେମାନଙ୍କର ଅଭ୍ୟାସ । ଉପାସ ରହିବ ହାତ ନ ପତେଇବା ସେମାନଙ୍କର ଧର୍ମ ।

ବସ୍ତିର ଅନ୍ୟମାନଙ୍କ ପରି ଅଗଣି ଯେନା ଜଣେ । ତା ଘରକୁ ପଶିବାକୁ ହେଲେ, ନଇଁ ନଇଁ କରି କଡା ଦଉଡ଼ି ବନ୍ଧା ତାଟି ଖୋଲିବା ଦରକାର ପଡ଼େ ।

ତା'ର ଖାଣ୍ଟି ମାଟିର ଘର, ମାଟିର ଚଟାଣ, ମାଟିର ବାସନ । ମାଟିରେ ସେ ମିଶେ । ସେଥିରେ ସୁନା ଫଳାଏ ।

॥ ନବଘନ ଦାଶ ॥
ତୃତୀୟ ବାର୍ଷିକ (କଳା)

ତେଣୁ ମାଟିକୁ ତା'ର ଘୃଣା ନାହିଁ । ଲୁଗାରେ ଲାଗିଲେ ଝାଡ଼ିବା ଦରକାର ପଡ଼େନ । ଦେହରେ ଲାଗିଲେ ଚନ୍ଦନ ପରି ସ୍ନେହ କରେ । ସିଏ ମଣିଷ, ମାଟିର ମଣିଷ ।

ଅଗଣି ସେନାର ସଂସାର ଅଛି ସମାଜ ବି ଅଛି । ଅଗଣି ସେନା ପରି ତା ସ୍ତ୍ରୀ ମଧ୍ୟ ମୂଲ ଲାଗେ । କାଠ ଜାଳ ବିକେ । ସେମାନଙ୍କ ସମାଜରେ ଖଟି ଖାଇବାରେ ସରମ ନାହିଁ । ବଡ଼ ଝିଅଟିର ଅଂଗେ ଅଂଗେ ଖୁମାଣୀ ଯଉବନ । ତଥାପି ସେ ମା' ପରି ମୂଲ ଲାଗେ । ଏକଲା ବି ଯାଏ । ତାକୁ କେହି ଜଗିବା ଦରକାର ନାହିଁ କି ମା ତା'ର ମନରେ ଭୟ ନାହିଁ । ତା ତଳକୁ ଶ୍ରେଷ୍ଠ ପୁଅ ଦୁଇଟି— ଡୁବୁରୀ ଓ ଝୁବୁରୀ । ସକାଳୁ ଛେଳି ଗୋଠ ନେଇ ଯାଆନ୍ତି, ଫେରନ୍ତି ପୁଣି ସଂଧ୍ୟାକୁ ।

ସଂଧ୍ୟା ବେଳକୁ ଭାଇ ଭଉଣୀ ଏକାଠି ବସନ୍ତି । ଝୁସିଗପ କରନ୍ତି । ବଡ଼ଭଉଣୀ ଚନ୍ଦ୍ରୁଖୀ କହେ ସେ କପରି କେତୋଟା କଙ୍କଡ଼ା ବିଲରୁ ଧରିପାରିଛି । ଆଜି କେମିତି ଅଣ୍ଡିଏ ଗେଣ୍ଡା ଗୋଟେଇ ଆଣିଛି । ସାହୁ ଘର ଖମାରରୁ ଯେଉଁ ମୂଷା ମରିଯାଇଥିଲା, ତାକୁ କେମିତି ସେ ଗୋଟେଇ ଆଣି ଚୁଲିରେ ପକେଇଛି, ଇତ୍ୟାଦି ·· ଇତ୍ୟାଦି···

ଶ୍ରେଷ୍ଠ ଭାଇ ଯୋଡ଼କ ତାଙ୍କ କଥା ଗପନ୍ତି । ଆଜି କେମିତି ଲଟାରୁ ପେଟେ କୋଳି ଖାଇଲେ, ଡୁବୁରୀ କେମିତି ଛେଳି ଦୁହିଁଲା, ଝୁବୁରୀ କେମିତି ଆଁ କରି ପିଇ-ଗଲା । ଗୋଟାଏ ଗଧିଆ ଆସି ଛେଳିକୁ ଛୁଉଁଥିଲା । ସେମାନେ କେମିତି ଘଉଡ଼ାଇ ଦେଲେ, ଦୁହେଁଯାକ କପରି ଆଜି ବୋଝେହେବ ଅନାବନା ଶାଗ ତୋଳି ଆଣିଛନ୍ତି, ଇତ୍ୟାଦି ··· ···

ସେଇ ବସ୍ତିର ମଝିରେ ଆଖଡ଼ା ଘର । ଦିନେ ଦିନେ ଉପାସ ରହି ସମସ୍ତେ ଭେଦା କରି ସେ ଘର କରିଛନ୍ତି । କାମରୁ ଫେରିଲେ ସେଠାରେ ଗାଉଣା ବାଜଣା ହୁଏ । କେହି କେହି ଶୁଣୁ ଶୁଣୁ ହାଲିଆରେ ଢୁଳେଇ ପଡ଼ନ୍ତି । ତା'ପରେ ପିଲାମାନଙ୍କଓଁର ବା— ବା— ଓ କରି ପଡ଼ିଯାଏ ।

ଏଇ ବସ୍ତିଟି ଯୋଉ ଗାଁ'ର ଲାଞ୍ଛ, ସେ ଗାଁ'ରେ ବଡ଼ ବଡ଼ କୋଠାଘର ଠାରୁ ଗୁଳିଆ ପର୍ଯ୍ୟନ୍ତ ଦେଖାଯାଏ । ଧନୀ, ଗରିବ, ଉଚ୍ଚ, ନିଚ, କେତେପ୍ରକାର ବାଛ ବିଚାରର ସେଣୀରେ । ସଦାବେଳେ ଗାଁ ଦୋଳମଳ, ଝାଉଁଝିଆ, ଜୁଆଚୋରୀ, ପରଶ୍ରୀକାତରତା ଓ ବ୍ୟଭିଚାରରେ ସେ ଗାଁ'ର ଜଳବାୟୁ ଦୂଷିତ । ସେଠି ବଡ଼ ମାଛ ଶ୍ରେଷ୍ଠ ମାଛକୁ ଗିଳେ । ସେଠାରେ ମୂଷାମାନେ ବିଲେଇ ବେକରେ ଘଣ୍ଟି ବାନ୍ଧିବାକୁ ସଭା କରନ୍ତି । ସେଠି ପୁଣି ବୁଢ଼ା ବାଘ ସୁନା କଙ୍କଣ ଦେଖାଇ ବାଟୋଇକୁ ହତ୍ୟା କରେ ।

ଚନ୍ଦ୍ରୁଖିର ବାହାଦର ପାଇଁ ଅଗଣିର ଚିନ୍ତା ନାହିଁ । କାରଣ ସେ ବସ୍ତିରେ ମନୁଷ୍ୟ କେବଳ ମନୁଷ୍ୟକୁ ହିଁ ବିବାହ କରେ । କଳକବ୍ଜା, ଟଙ୍କା ପଇସା ବା

ପଶୁଜୀବମାନଙ୍କୁ ବିବାହ କରିବା ସମାଜ ଅନୁମୋଦନ କରେନ । କେବଳ ଗୋଟିଏ ଭୋଜି ସମସ୍ତେ ଦେବେ, ସମସ୍ତେ ଖାଇବେ ।

× × ×

ପାଚିଲା ଧାନ କ୍ଷେତ । ଶୀତ ରାତି । ପଞ୍ଚୁଆ ନାଏକ ପୁଅ ମହୁଆ, ସାହୁଘର ବିଲରେ ଏକଲା ବୋଡ଼ଆ ଶୋଇଛି । ତଳେ ଦୁଇ ବୋଡ଼ ନଡ଼ା ପଡ଼ିହୋଇଛି, ଆଉ ଉପରେ ମଡ଼େଇ ହୋଇଛି ୩।୪ ଖଣ୍ଡ ଅଖା । ହିଡ଼ ଉପରେ ନିଆଁ ଅଟାଟା କୁହୁଳୁଛି ।

ଅଧ ରାତି । ମହୁଆ ଦେହରେ କାହାର ମୃଦୁ ପରଶ । ଚମକି ପଡ଼ିଲା ମହୁଆ । ଅଣ୍ଡାଳି କରି ଧରିଲା, ତା'ର ମୁଣ୍ଡେ ଉଚ୍ଚର ଠେଙ୍ଗା ଖଣ୍ଡିକ ।

— ଆରେ ଚନ୍ଦୁରି, ତୁ କୁଆଡ଼େ ଲୋ ?

— ତୋ'ର ପାଖକୁରେ ମହୁଆ — ମନଟା ମୋର କେମିତି କେମିତି ଲାଗିଲା । ତୁ ଏଠେଇ ଏକଲା, ମୁଁ କେମିତି ନିଧଡ଼କରେ ରହିବି କହିଲୁ ।

ମହୁଆ ଗୁଡିରେ ଚନ୍ଦୁରିର ଉତ୍ତୁଙ୍ଗ ଗୁଡିଟା ମିଶିଗଲା ଗୁଏଁ ଗୁଏଁ ।

ମହୁଆର ବେକକୁ ଦୁଇହାତରେ ଛନ୍ଦି ଧରି, ଚନ୍ଦୁରି ତା'ର କାନରେ କ'ଣ କହିଦେଉଥିଲା ।

ଦୁହେଁଯାକ ହସି ହସି ଲେଟିଗଲେ ବୋଡ଼ଆ ଭିତରେ ।

ସେମାନେ ଏମିତି ମିଶନ୍ତି । ଜଣେ କେବଳ ଜଣକୁ ଭଲପାଏ, ଆଉ ତାକୁ ନିଜର କରେ । ସେମାନଙ୍କର ମିଶିବାରେ ବାଧା ନାହିଁ କିମ୍ବା ସେମାନଙ୍କର ପ୍ରେମରେ ପ୍ରତାରଣା ନାହିଁ । ସମାଜରେ ସେମାନଙ୍କର ବଡ଼ ସାନ ଭେଦଭାବ ନାହିଁ କି ଲୋକ ଦେଖାଣିଆ ଛଳନା ନାହିଁ । ସେମାନଙ୍କର ପ୍ରେମ ଆକାଶ ଓ ପୃଥିବୀପରି ଚିରନ୍ତନ ଓ ସତ୍ୟ । ଲେବୁଲ ମରା ବୋତଲ ଔଷଧ ଅପେକ୍ଷା, ମାଟିରୁ ଆମଦାନୀ ନଗ୍ନ ଚେରମୂଳରେ ସେମାନେ ବେଶୀ ବିଶ୍ୱାସ କରନ୍ତି ।

ସେମାନଙ୍କର ଯୌବନ ଅନାବରଣ;
ସେମାନଙ୍କର ହୃଦୟ ନିର୍ମଳ;
ସେମାନଙ୍କର ପ୍ରେମ ଚିରନ୍ତନ ସତ୍ୟ;
ଖଟି ଖାଇବା ସେମାନଙ୍କର ଧର୍ମ ।

× × ×

ରୁପେଲି ରଙ୍ଗର ଖଣ୍ଡ ଖଣ୍ଡ ଭସା ବାଦଲର ନିମନ୍ତ୍ରଣ - ପତ୍ର ବଣ୍ଟାଯାଉଥିଲା, "କାଲି ସେ ବସ୍ତିରେ ଭୋଜି ହେବ" ।

# ସେ ଏକ ସଂଳାପ

ସଂଳାପ ଏକ ।

ଅନୂଢ଼ା ତରୁଣୀ ପ୍ରାଣର ଉଦ୍‌ବେଳିତ କାମନା ବାସନା ଗହନ ମନତଳର ନିଭୃତ କଥା ···

ଅନ୍ୟ କେତେ ମୁହୂର୍ତ୍ତ ···

ଶ୍ରାବଣୀ ··· ଶ୍ୟାମଳୀ ···

ସେମାନେ କିନ୍ନରୀ କନ୍ୟା ନ ହେଲେ ମଧ୍ୟ ସକାଳର ସଦ୍ୟଫୁଟା ଗୋଲାପ କାନ୍ତି ଉପମା ଧରି ଉଚ୍ଛଳ ହସ ହସ ଲାସ୍ୟ-ମୟୀ ଦୁଇଟି ତରୁଣୀ ।

ଇସତ୍ ଚହଲା ହସ ଅଧର ନିମ୍ନଭାଗରେ । ଦେହର ଅଙ୍ଗଲତାରେ ଭରା ଯୌବନର ଅନନ୍ୟ ରୂପ ସୌଷ୍ଠବ — ଅକଳନ ବୈଭବ ।

ଶ୍ୟାମଳୀ ହସେ ··· ଶ୍ରାବଣୀ ମଧ୍ୟ ତାକୁ ଚାହିଁ ମୃଦୁ ହାସ୍ୟରେଖା ତା' ଓଠ ତଟରେ ଫୁଟାଏ । ଦିହେଁ ଦିହିଁଙ୍କୁ ଚାହିଁ ହସିଉଠନ୍ତି ଅନେକ କ୍ଷଣ । ହସର ଉର୍ମିରେ ଉଦ୍‌ଭାସିତ ହୋଇଉଠେ କ୍ଷୁଦ୍ର କ୍ଷୁଦ୍ର ଅନେକ ଦୁରନ୍ତ ଭାସମାନ ବୋଇତ । ସେଇ ହସର ଆକାଶରେ ଫୁଟିଉଠେ ଅନେକ ରୂପର ଉପତଗ ···

ସେମାନେ ଏଇ ଦୁଇଟି ବିହଂଗୀ ।

ସହରାଂଚଳ ମୁକ୍ତ ପରିବେଷ୍ଟନୀ ମାଧ୍ୟମରେ ପରସ୍ପର ବୟସ ଅଭିବୃଦ୍ଧି ସଂଗେ ସଂଗେ ଅଖଣ୍ଡ ବନ୍ଧୁତ୍ୱ ବିକଶି ଉଠେ କ୍ରମଶଃ ସୁସ୍ଥ, ଶାନ୍ତ ବାତାବରଣ ପରିପ୍ରେକ୍ଷୀରେ ପଲ୍ଲବିତ ହୋଇ—ଦୁଇଟି ଫୁଟନ୍ତ ଗୋଲାପର—ଦୁଇଟି ଜ୍ୟୋତିଷ୍କ-ଗଣଂକର ।

ଶ୍ରାବଣୀର ଓ ତା' ବଉଳ ଶ୍ୟାମଳୀର ।

ଶାନ୍ତ ପରିବେଶ ମଧ୍ୟରେ କ୍ଷୁଦ୍ର ୟୁନିଟ୍ ନିଷ୍ଟ୍ରପ୍ ଭାବେ ମୁଣ୍ଡ ଟେକି ଛିଡ଼ା ରହିଥାଏ ଅନେକ ··· ଅନେକ ନିଭୃତ

॥ ମନ୍ମଥ ନାଥ ମହାନ୍ତ ॥
ତୃତୀୟ ବାର୍ଷିକ (କଳା)

କଥା ଅଂତର ଭିତରେ ନବୁଜ ରଙ୍ଗ କାଂଥବାଡ଼ର ··· ପ୍ରତିଟି ଘରର ··· ଗଳି କଂଦ୍ଦର କାକକୃଷ୍ଣ ଅଂଧାରର ··· ଆଉ ସମସ୍ତିଂକର ।

ଶ୍ରାବଣୀର ··· ଶ୍ୟାମଳୀର ··· । ଚହ୍ଦଳ ହସ ··· ବୟସର ··· ··· ଉଚ୍ଛୃଂଖଳ ନଗ୍ନ ହସ ସବୁଦ୍ଦିନର ।

ମୁହଁକୁ ମୁହଁ ସଂଯୋଗ କରି ଗହନ ହ୍ଦନର ଗୁପ୍ତ ଚୁପ୍ର ଚୁପା କଥା ଅନେକ··· ଅନେକ··· । ଆଜର ନୁହେଁ ·· କାଲିର ବି ନୁହେଁ ।

ଅସ୍ପଷ୍ଟ ଅବ୍ୟକ୍ତ ଧାଡ଼ବଂଧା ସେମାନ ସବୁ କୋଉ କାଳ ଯୁଗର ।

ଇମିତି ଅଖଂଡ଼ ବଂଧୁତ୍ୱ ପରିସର ମାଧ୍ୟମରେ ଉଭୟେ ଉଭୟଙ୍କୁ ଏକ ସଂଗେ ଭଲପାଇ ଉଠଂତି ।

ସେଦ୍ଦିନ ଯୁକ୍ତ ସଂଲଗ୍ନ ଉଚ୍ଚ ଏକ ବାଳିକା ବିଦ୍ୟାଳୟ ସହସମ୍ମିଳନରେ ଅୟମାରଂଭ ହୁଏ ମନୋରମ ଏକ ବିଚିତ୍ରା । ସେଇ ବିଚିତ୍ରା ମାଧ୍ୟମରେ ଏକାଂକିକା ପରିବେଷଣ; ସେଉଁଥିରେ ମୁଖ୍ୟତଃ ନାୟକ ନାୟିକା ଭୂମିକାରେ ଅଂଶ ଧରି ଓହ୍ଲାଂତି ଏଇ ଛଂଦ ଚପଳ ଦୁଇଟି ବନ୍ୟ ହରିଣୀ ।

ତରୁଣ ନାଟ୍ୟକାର ସ୍ୱରୂପକୁମାର ସହିତ ସଂଗୀତ ଶିଳ୍ପୀ ଶ୍ରୀ ଜ୍ଞାନେନ୍ଦ୍ର କୁମାର । ଅନେକ ଅନୁରୋଧ ପ୍ରବଳ ଚାପରେ ଏକାଂକିକାର ସାଫଲ୍ୟ ଭାର ସବୁମତେ ନିଜେ ହିଁ ବହନ କରି ନେଇଥାଂତି ।

ଅଭିନୟ ମଂଚସ୍ଥ ହୋଇଉଠିବା ସଂଗେ ସଂଗେ ଦ୍ୱିଗୁଣିତ ଆନଂଦ ମାତ୍ରା ଉଦ୍‌ବେଳିତ ହୋଇଉଠେ ଦ୍ୱିହିଁଙ୍କ ମନରେ ।

ଅଭିନୟ ଅଂତରାଳରେ ସ୍ୱରୂପକୁ ଭଲପାଇବାର ରାସ୍ତା ନିର୍ମାଣ ଦିଗରେ ଆଗେଇ ନେଇଥାଏ ଶ୍ୟାମଳୀ ।

ଜ୍ଞାନେଂଦ୍ରଂକୁ ଶ୍ରାବଣୀ ।

ଖୁସିର ସିଢ଼ିରେ ପାହାଚ ପାହାଚ ଅତିକ୍ରମ କରିବାକୁ ଯାଇଁ ସ୍ୱରୂପ କଥା ଭାବି କଥା ଭାବି ସମ୍ମୋହିତ ହୋଇଉଠେ ଶ୍ୟାମଳୀ ।

ନାଟ୍ୟକ ଉର ବିଚିତ୍ର ମନମୁଗ୍ଧକର ଭଂଗୀ— ଉଦାସ ଆଖି ଚାହାଣି— କମନୀୟ ରୂପ କାଂତି ଶ୍ୟାମଳୀ ମନର ନୀଳ ସାଗର ଉପକୂଳରେ ଜାହାଜ ଲଂଗର ପକାଇଲା ଭଳି ସେ ମସ୍ତ ଆଶ୍ୱସ୍ତି ଅନୁଭବ କରିବା ସଂଗେ ସଂଗେ ଅଂତରର ନିଭୃତ କୋଣରେ ସ୍ୱରୂପ ପାଇଁ ଏକ ମନୋରମ ଆବାସ ନିର୍ମାଣ କରିବସେ ଶ୍ୟାମଳୀ ।

ଆଉ ··· ···

ଘନ ଗୌର କାନ୍ତି ବଶିଷ୍ଟ ଜ୍ଞାନେନ୍ଦ୍ର ବାବୁ । ନାସିକା ଘର୍ଘ । କଲମର ସରୁ ଗାର ପକା ଏକ ଲମ୍ବ ନିଶ ବେଶ୍ ମନାଏ ।

ଥରକ ପାଇଁକି ଚୁହିଁଦେଲେ ମନଟା ଆପେ ଆପେ ତାଙ୍କ ପାଖରେ ନଇଁ-ଆସେମନକୁ ମନ ଅନେକ ଝୁଟିର ପାରବାର ମଧ୍ୟରେ ସଂଚରଣ କରିବାକୁ ଆରମ୍ଭ କରେ ଶ୍ରାବଣୀ ।

ଦୁଇଟି ଜୀବନ ତଟ ଭିନ୍ନ ଭିନ୍ନ ସ୍ରୋତ ଅନୁକୂଳ ବାତାବରଣ ଦେଇ ଅବଳୀଳା କ୍ରମେ ଭାସିଯାଆନ୍ତି ଅଶାନ୍ତ ଉଦଧି ଯେଉଁଠି ଅନନ୍ତ ନୀଳିମା ବୁକୁରେ ଆଦିମ ସୁଷୁପ୍ତି ଲଭି ହଜାଇ ବସେ ନିଜକୁ ।

ସେଇଠିକି । ସେଇ ଆଦିମ୍ ଇଭ୍ ···

ତା'ପରେ ··· ··

କଳାବନ୍ତ ଅଂତରାଳରେ ନଷ୍ଟହିଁ ହୁଏ ନାଟକଟି । ସମ୍ମୁଚ୍ଛ୍ୱାସ ସୁଖ୍ୟାତିରେ ଉଭୟେ କଳାକାର ସହାସ୍ୟ ବଦନରେ ହାତଯୋଡ଼ି ପ୍ରତିନମସ୍କାର ବାର୍ତ୍ତା ମଧ୍ୟରେ ବିଦାୟ ନେଇ ଫେରିଥାନ୍ତି ।

× × ×

ପୁରୀ ସହର ଯାତ୍ରା ।

ରହଣି ସମୁଦ୍ର ଉପକଂଠରେ ବିହ୍ୱଂକର ।

ଶ୍ରାବଣୀର ଓ ଶ୍ୟାମଳୀର ।

ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷା ବୋର୍ଡ ଓହ୍ଲେଇ ଦେଇ ଫଂକାମନ ଧରି ବାହାରିଥାନ୍ତି ବିଅଁ ଦର୍ଶନ ନଂଗେ ସଂଗେ ସମୁଦ୍ର ସ୍ନାନ ପ୍ରବଳ ଆକାଂକ୍ଷା ଧରି ।

ମ୍ଳାନ ଅପରାହ୍ନ ··· ···

ନୀଳ ସମୁଦ୍ର ଉପକଂଠ । ବିହେଁ ଲଗାଲଗି ହୋଇ ଅନଂତ ଝୁଣ୍ଟିଗପର ପସରା ମେଲେଇ ଗପି ଚାଲିଥାନ୍ତି ଅନେକ··· ଅନେକ ··

ଧାଡ଼ିବନ୍ଧା ଅନେକ ଝୁଟି ଗପ ।

ଶ୍ୟାମଳୀ କୁହେ ଶ୍ରାବଣୀକ ଖଂଡଗିର ସଂଳାପ । ସ୍ୱରୂପ ବାବୁ ଓ ସେ । ଆଉ ଅବାଂକ୍ତ ଅଶ୍ଳୀଳ କ୍ରିୟାକଳାପ ।

ସ୍ମିମିତ ···

ଶ୍ରାବଣୀର ଦଗ୍ଧ ମନ ବିଳପି ଉଠେ । ଅଶ୍ରୁପ୍ଲାବନ ଭିତରେ ନିଜକୁ ବିଧୌତ କରି କାହାଣୀ ତା'ର ଆରଂଭ କରେ ସଂକ୍ଷିପ୍ତ ଉପକ୍ରମଣିକା ପରିପ୍ରେକ୍ଷୀରେ ବଉଳ ଆଗେ ଗୋପନ କଥା ··· ···

ରାଜମହଲ ହୋଟେଲ ଆଉ ସେ । ଜ୍ଞାନବାବୁଙ୍କ ଅଶ୍ଳୀଳ ହିଂସ୍ରା ···

ଶୋକର ସମୁଚ୍ଛ୍ୱାସ ବେଦନା ଭିତରେ ନିଜକୁ ହଜେଇ ଦିଏ ବଉଳ କୋଳରେ ମୁହଁ ଛପେଇ ······

ଆଖି ଆଖିରେ ଅଶ୍ରୁର ପ୍ଲାବନ ଭୟଙ୍କର ।

ଅମ୍ଳ ପ୍ରତାରଣାକୁ ସଚେତନ କରି କଏ ବହ୍ନିଙ୍କ ଲକ୍ଷ୍ୟ ରଖି କହୁଥିଲା ····· ବାରଂବାର··· ଅନେକବାର ··· ଏତେ ବୋଝ ··· ଏତେ ନିନ୍ଦା ··· ଏତେବଡ଼ କାଳିମା ଧରି କ'ଣ ବଂଚି ରହିହବ··· ?

ମନକୁ ମନ ପ୍ରଶ୍ନ କରି ଅନ୍ୱେଷଣ କରୁଥିଲେ ମୁକ୍ତିର ମାର୍ଗ । ମାର୍ଗର ଏକ ସ୍ୱର୍ଣ୍ଣ ନିଶୁଣୀ ।

ପାପର ନୁହେଁ ··· ପୁଣ୍ୟର ।

ତା ପରେ ······

ନିସ୍ତରଂଗ ଏକ ମୌନ ପ୍ରତ୍ୟୁଷ ପଦକ୍ଷେପ । ରିକ୍ସା ପହଁରି ଯାଇଛି ତା' ରାସ୍ତାରେ ସୁଅ କାଟି ଶ୍ରାବଣୀ ଶ୍ୟାମଳୀଙ୍କ ଓହ୍ଲେଇ ଦେଇ ।

ସେମାନେ ··· ···

ରାଜକାପୁର ନର୍ତ୍ତକୀ ଭଳି ନର୍ତ୍ତନଶୀଳ ସୁଠାମ ଭଂଗୀରେ ଦୁଇଟି କମନୀୟ କନ୍ୟା ଦୋହଲି ଦୋହଲି ଗୃହାଥାଂଭି ସାଗର ଉପକଂଠେ ମନରେ ଭରି ଜଳକେଳି କୌତୁହଳର ଏକ ସଫେଦ୍ ପ୍ରବୃତ୍ତି ।

ଆଦିମ ଆକାଂକ୍ଷା । ସନାତନ ଯୁଗର ଚିରାଚରିତ ମନଖୋଲା ସମୁଦ୍ର ସ୍ନାନ ।

ବ୍ୟବଧାନ ମୁହୂର୍ତ୍ତ ମାତ୍ର ।

ଗୋଟିଏ ତରଂଗ ପଛରେ ଧାଡ଼ିବନ୍ଧା ଉଦ୍‌ବେଳିତ ତରଂଗ ଅନ୍ତଃସ୍ରୋତ ।

ବଉଳ ବଉଳଠୁଁ ବିଚ୍ଛିନ୍ନ ରହେ କାଳ ଯୁଗ ପାଇଁ ।

## "ଚିଠି"

ସ୍ୱାଗତିକା,

ମୋର ଆନ୍ତରିକ ଶୁଭେଚ୍ଛା ଗ୍ରହଣ କରିବୁ କି ନା ଜାଣେନା, ତଥାପି ପଠାଇଲି ଏକ ଆଶାପୂର୍ଣ୍ଣ ହୃଦୟ ନେଇ । 'ତୋର ମନେଥିବ ନିଶ୍ଚୟ— ମୋତେ ତୁ ନିଜେ କହିଥିଲୁ ବୋଉର ଇଚ୍ଛାନାହିଁ ତୁମ ସଙ୍ଗେ ମୋର ବିବାହ ହେଉବୋଲି । ମାତ୍ର ମୋ ଓ ତୁମ ଭିତରେ ଗଢିଉଠିଥିବା ସମ୍ପର୍କରେ ଆଜି ବିଚ୍ଛେଦ କଳ୍ପନା କରିବା କେତେ ମର୍ମାନ୍ତିକ ! ତୁମେ ମୋତେ ଭୁଲିଯାଅ, ଯାହାଫଳରେ କି ମୁଁ ନିଜକୁ ତୁମ ପାଖରୁ ଦୂରେଇ ନେବାକୁ ଚେଷ୍ଟା କରିବି" । ଚମତ୍କାରତ ! ଦୋଷଟାକୁ ନିଜ ଉପରେ ନ୍ୟସ୍ତ ନ କରି ପର ଉପରେ ଢ଼ାଳିବାଟା ବୋଧହୁଏ ତୋର ଗୋଟାଏ ଅଭ୍ୟାସ ନା କ'ଣ । ମାତ୍ର ତୁ କହିପାରିବୁ, ମୋତେ ନ ପାଇ ତୁ ଜୀବନରେ ସୁଖୀ ହେବୁ ବୋଲି । ମୁଁ ଚୁହେଁ କେବଳ ସେତିକ ଉତ୍ତର । ଯାହାଫଳରେ କି ଆମ ଜୀବନ ପଥରେ ଗଢିଉଠିଥିବା ସ୍ନେହ ଓ ମମତାର ବୃନ୍ଦାଆଣୀ ଜାଲି ଆସ୍ତେ ଆସ୍ତେ ଛୁଉ ଶେଷକୁ ଚିରଦିନ ପାଇଁ ଲୋପ ପାଇଯିବ । ମୁଁ ଜାଣେ ତୋର ସେ ଧୈର୍ଯ୍ୟ ଆଉ ସତ୍‌ସାହାସ ନାହିଁ । କିନ୍ତୁ କାହିଁକି ? ତୁ ଜାଣୁ ସତ କଥା କହିବାକୁ ମୁଁ କେବେ ପଶ୍ଚାଦ୍‌ପଦ ହୁଏନା । ମନେ ରଖ ! ମୁଁ ହେଉଛି ସେହି ଭାରତର ସନ୍ତାନ ଯିଏ ସଦା ନିର୍ଭୀକ । କେତେ ନିର୍ଯ୍ୟାତନା, ବୈଦେଶିକ ଆକ୍ରମଣ ସତ୍ତ୍ୱେ ତଥାପି ଏ ଜାତି ଆଗେଇ ଚାଲିଛି ତାର କର୍ତ୍ତବ୍ୟର ପଥରେ । ପୁଣି ଇତିହାସର କଥା ! ପାଠ ପଢ଼ିଛନା ବୁଦ୍ଧିମତି । ତଥାପି— ଗୋଟାଏ କଥା— ଆର୍ଯ୍ୟ ସନ୍ତାନର ଶପଥ, ତା ଜୀବନର ଜାତକ ।

ତୁ ମୋତେ ଭଲପାଇଥିଲୁ ଖୁବ୍ ନିବିଡ଼ ଭାବରେ । କିନ୍ତୁ ଭାବି ଦେଖିଥିଲୁ କେବେ, ଭଲପାଇବାଟା କିପରି ? ନା ! ତୁ କେବେ ଚେଷ୍ଟା କରିନାହୁଁ । ତୁ ଭାବିଥିଲୁ, ଭଲପାଇବାଟା ଗୋଟାଏ ଖେଳ ନା । କିନ୍ତୁ କାହିଁକି ? ଜୀବନଟାକୁ ଏମିତି ଜାଳି-ପୋଡ଼ି ଧୂଳିସାତ୍ କରିଦେବାରେ ତୋର ବା କି ଆନନ୍ଦ ! ତୁ ଭାବୁଛୁ ମୁଁ ନିଃସମ୍ବଳ ଅର୍ଥ-ବିଭବର ସ୍ୱାମୀମାନ, ମୋର ନାହିଁ

॥ ଶ୍ରୀ ପ୍ରତାପ କୁମାର ମହାନ୍ତି ॥
୩ୟ ବାର୍ଷିକ (କଳା)

ଐହିକ ସୁଖ ଲଗି ମୁଁ ନିଃସ୍ୱ ! ଏଇଆ ନା ! ଦୋଷ ବା ଦିଆଯିବ କାହାକୁ ? ମୁଁ ଆଜି ଅନୁଭବ କଲି "ପ୍ରେମ" କେବଳ ଧନ, ଐଶ୍ୱର୍ଯ୍ୟ ଉପରେ । ଅଥଚ ଏକ ଐଶ୍ୱର୍ଯ୍ୟଶାଳୀ ହୃଦୟ ଏଠି ମୂଲ୍ୟହୀନ । ତତେ ଦୋଷ ଦେବ ବା କାହିଁକି । ଏ ଜୀବନଟା ମୋର ନିଃସଙ୍ଗ ପାଲଟିଯାଉ । ପର ଜନ୍ମରେ ଭଗବାନହିଁ ଦେବେ ମୋର— କଇଫତ୍ ।

ଭାବାବେଗରେ ଅନେକ ବାଜେ କଥା କହିଗଲିଣି । ନିଜକୁ ହଜାଇ ଦେବାକୁ ଯାଇ ତୋ ପାଖକୁ ମୋ ମନର ଅସଲ ଉଦ୍ଦେଶ୍ୟଟା ଜଣାଇବାକୁ ଭୁଲିଯାଇଛି, ମୁଁ ତତେ ଭଲପାଇଛି ଓ ପାଇଥିବି ଜୀବନର ଶେଷ ସମୟ ପର୍ଯ୍ୟନ୍ତ । କାରଣ ମୁଁ ଜାଣେ ! ଭଲପାଇବାଟା ଜୀବନର ଏକ ପୁଣ୍ୟ ଓ କର୍ତ୍ତବ୍ୟ । ପ୍ରେମ ବିନା ମଣିଷର ଜୀବନ ଶୁଷ୍କ ସାହାରା । ଈଶ୍ୱର କରନ୍ତୁ — ତୁ ଭଲରେ ସଂସାର କର । ତୋର ଜୀବନ ହେଉ ପୁଷ୍ପିତ । ମୁଁ କେବେହେଲେ ତୋ ଜୀବନରେ ଝଡ଼ ସୃଷ୍ଟି କରିବିନି ସାଗରିକା ! ବରଂ କରିବି କ'ଣ ଜାଣୁ ? ତୋ ପାଇଁ ଭଗବାନଙ୍କ ପାଖରେ ପ୍ରାର୍ଥନା କରିବି, ତୋ ଜୀବନର ମିଳନ ଡୋର ଅଖଣ୍ଡ ରହିଥାଉ । ତୁ ତୋର ଜୀବନର ସାଥୀକୁ ନେଇ ଖୁବ୍ ସୁଖଶାନ୍ତିରେ ସମୟ ଅତିବାହିତ କର । କିନ୍ତୁ ମୁଁ କ'ଣ କରିବି ଜାଣୁ ? ତୁମ ଆନନ୍ଦର ପ୍ରତିଫଳନରେ ମୋର ନିଃସଙ୍ଗତା ଆଲୋକିତ ହେବ, ତୁମ ପ୍ରୀତିର ତରଙ୍ଗରେ ଛୋଟ ଫୁଲ ଡଙ୍ଗାଟିଏ ହୋଇ ମୁଁ ଭାସିବି, ନାଚିବି — ତରଙ୍ଗର ତାଳେ ତାଳେ ଦୋଳି ଖେଳିବି । ତୁ ତୋର ଜୀବନସାଥୀ ପ୍ରଣୟର ଐଶ୍ୱର୍ଯ୍ୟ ଭିତରେ ବୁଡ଼ିରହି ମୋତେ ଭୁଲିଯାଉଥିଲେ ସୁଦ୍ଧା, ମୁଁ ତୁମଠାରୁ ଖୁବ୍ ଦୂରରେ ରହି ମିଳନର ସ୍ୱପ୍ନ ଦେଖି ଦେଖି ହଜାଇ ଦେଇଥିବି ନିଜ ଶରୀରକୁ — ସାଗରର ବିସ୍ତୀର୍ଣ୍ଣ ବାଲୁକାରାଶି ଉପରେ ।

ମୋତେ କ୍ଷମା ଦେବୁ ସାଗରିକା । ବହୁତ କିଛି ଲେଖୁ ଲେଖୁ ଲେଖିଦେଇଛି ବୋଲି — ବିଦାୟର ଅନେକ ସଦିଚ୍ଛା ସହ ।

ଶୁଭାନୁଧ୍ୟାୟୀ
'ମୁଁ'



# सुरभारती

नाना दुःखार्त्तसारे विकटकपटके नष्टशिष्टान्धकारे
पारावारे ह्यपारे प्रतिवसति नरो मर्त्यसंसारघोरे
नानाभावादियुक्ता मधुमधुरभरा पत्रिकाभारधारा
ख्यातिं लब्ध्वा सहास्यं वितरतु वितुषान् दिव्यभावं स्वभावम् ॥

॥ गोपीनाथः ॥

## —सूचीपत्रम्—

## —भाषासु मुख्या सुरभारतीयम्—

(संस्कृत विभागीयम्)

शाकुन्तलं नाटकमग्रगण्यम्
यस्यां च माघः खलु काव्यरत्नम् ।
संशोभिता सा सततं पृथव्याम्
भाषासु मुख्या सुरभारतीयम् ॥ १ ॥

काव्यं सुरम्यं रसपेशलं च
वेदादि शास्त्राणि समावहन्ति ।
ज्ञानं विशुद्धं भुवि दानकर्त्री
भाषासु मुख्या सुरभारतीयम् ॥ २ ॥

हृद्यैश्च पद्यैः समलं कृता या
सम्पादयित्री सरसं हि चेतः ।
पूता विद्वद्भिरभिनन्दनीया
भाषासु मुख्या सुरभारतीयम् ॥ ३ ॥

वैदेशिका यां समधीत्यमुग्धाः
प्रोचुः सुधायाःमधुरा किलैषा
सा भद्रदा भव्यगुणै रूपेण
भाषासु मुख्या सुरभारतीयम् ॥ ४ ॥

वेदान्तसाहित्य पुराण शास्त्रा—
स्त्योलोके यस्यां सुधियः पुराणाः
सम्मानमापुः प्रचुरं पृथिव्यां
जागर्त्तु सा नः सुरभारतीयम् ॥ ५ ॥

धर्मनाशात् प्रणस्यति—

"ध्रीयते अनेन इति धर्मः"। "धर्मेण हीनाः पशुभिः समानाः।" अस्माकं भारतीय शासनक्षेत्रे अतोऽपि धर्मः प्राणकेन्द्रः आसीत्। धर्महीनशासनं प्रकृतशासनपदवाच्यं न भवति। राज्यशासनाय राज्ञापि जनहिताय सकलसुख-सम्भोगः वर्जनीयस्त्यक्तव्यो वा। भवभूतिकवेः उत्तररामचरिते प्रजानां रामचन्द्रः हिताय सुखेन जानकीमपि वनमत्यजत। तेनापि भणितं "स्नेह राज्यं च सौख्यं च यदिवा जानकी-मपि। आराधनाय प्रजानां मुञ्चतो नास्ति मे व्यथा।" अतः धर्म इव त्यागस्तु कैन्द्रिकबिन्दुश्चासीत् शासनस्य। फलतः, सुशासनफले मिष्टत्वमाभासते। परन्तु युगेऽस्मिन् शासक-प्रवराणां मध्ये शोषकाः सख्याधिकाः दृश्यन्ते। यस्तु शासनक्षेत्रं गच्छति, स केवल स्वकीयस्वार्थसाधनाय गच्छति। अतः यदि च शासनपद्धतिः गणतन्त्रं प्रजातन्त्रं वा भवति तथापि कथं वा सुफलं फलिष्यति? क्षेत्रेऽस्मिन् प्राचीनभारतीय शासनसंस्थायाः विषये किञ्चित् आलोकं सम्पातयितुः अधुना मे प्रयासः।

प्रागेव शासनं मुख्यतः आसीत् राजतन्त्रात्मकम्। यदि च पुत्रपौत्रादिक्रमेण राजानः सिंहासनस्य अधिकारत्वं नीयन्ते तथापि ऋक्वेदे ६/९२/६ अथर्ववेदे च प्रजाप्रतिनिधि-विषये उल्लेखमस्ति। प्रजाप्रतिनिधिभिः समिति। इति स्थाने राज्ञः निर्वाचनमासीत्। अस्मात हेतोः राजतन्त्रेऽपि प्रजातन्त्रं लुक्कायितं दृश्यते। यदा राजा सिंहासने अधि-ष्ठितः भवति तदा राज्यस्य समग्रदायित्वं तदीयम्। आधुनिक-युगे प्रजातन्त्र–शासनेऽपि यथा सर्वकाराः प्रजानां सकल-दायित्वं नयन्ति, अपितु नागरिकाणां पितरः केवलं जन्महे-तवः, तथा चासीत् अस्माकं प्राचीनभारतवर्षे। प्रसङ्गेऽस्मिन् कालिदासस्य उक्तिः सम्यगुदाहरणीया। यतः–स पिता पितरः–स्तासां केवलं जन्महेतवः।

|| अध्यापक श्री गोपीनाथ महापात्रः ||

शासकहीनं राज्यं अराजकम् । अतोऽराजकतां दूरीकरणाय बौधायनधर्मसूत्रे, महाभारते, बौद्धजातके, कौटिल्यार्थशास्त्रे, शुक्रनीतिसारे, कामन्दकीयनीतिसारे च राजतन्त्रादिविषयोल्लेखः परिदृश्यते । मनुस्मृत्यां शासकसम्पर्केण वर्त्तते यत् "अराजके हि लोकेऽस्मिन् सर्वतो विद्रुते भयात् । रक्षार्थमस्य सर्वस्य राजानमसृजत् प्रभुः । मनुस्मृतिः :— ७ । ३ ॥ तस्मिन् समये अस्माकं देशेऽपि दण्डस्य प्राधान्यं शासनक्षेत्रे दृश्यते । दण्डात् भीत्वा चौराःतस्कराश्च दुष्कर्म कर्त्तुं प्रयासः न कुर्वन्ति । अधुना छात्रनागरिकादीनां यादृशी उच्छृङ्खलता परिलक्ष्यते, सर्वमेतत् दण्डहीनशासनस्य परिचायकम् । यदि शासनतन्त्रेऽपि दण्डः न स्यात् तदा सबलानां अत्याचारेण दुर्बलाः व्यथिताः भविष्यन्ति । प्रसङ्गेऽस्मिन् मनुस्मृत्यां विलिख्यते, 'दण्डश्चेन्न भवेल्लोके विनश्येयुरिमाः प्रजाः । जले मत्स्यानिवा भक्ष्यन् दुर्बलान् बलवत्तराः ।"

यद्यपि राज्ञः हस्ते समस्तशक्तिः आसीत् तथापि स्वशक्त्याः अपप्रयोगः तेन न भूयते । विचारस्तु सर्वदा धर्मानुसारो आसीत् । यदपि धर्मे सत्य तत्तु विचारक्षेत्रे प्रयुणीय' इति मन्त्रेण शासन प्रतिपालितम् । अतः राज्ञि स्वेच्छाचारिता न परिदृश्यते । भावान्तेऽपि राज्यं प्रजानां आसीत्, शासनं तु प्रजाहितार्थम् । नहुषः वेनश्च स्वकीयस्वेच्छाचारशासनात् ततोः राजसिंहासनात् वहिष्कृतौ । शासकस्य आदर्शस्तु समाजस्या दर्शश्चासीत् । इत्थ अङ्गीकृत्य सीताचौर्य्यं रामराज्ये रजकेन समालोचितम् । अपराधेन राज्येऽपि सर्वे समानाः आसन् । क्षुद्रोऽपि शासनसमालोचनया समधिकारी दृश्यते ।

वहुकालं यावत् भारतमासीत् पराधीनम् । स्वाधीनतायाः पर वैदेशिकशासनदलिताः जनाः वासनक्षेत्रं आगत्य तेषां तीव्रप्रभाव विस्तारयन्ति । तेषां एव दासत्वमनोभावफलेन देशेऽस्मिन् अराजकता अन्यायमशान्तिश्च परिदृश्यते । स्वाधीनराज्येऽपि गणान्दोलनं हास्यकरम् । प्राक् धर्मेण यद् शासनमासीत् तदद्यापि दुर्लभम् । पितापुत्रयोः गुरुशिष्ययोः शासकशासितयोश्च सम्पर्के नास्ति मधुरम् । परन्तु अधिकतीव्रतरम् । सर्वकाराणां सकलयोजना विफला भवति । दारिद्र्यस्य प्रसारः प्रत्यहं भवति । यदिवा शासकाः भारतस्य स्वाधीनतां सम्यगनुभवन्ति तथापि इदानीं यावत् देशस्य साधारणजनानां अद्यापि स्वाधीनताफलस्यास्वादनेन नास्ति किञ्चित् स्वल्पसुयोगः । सर्वेषां मनसि धर्मनाशात् इत्थं शृङ्खलानाशं भवति । न्यायस्य धर्मस्य वा समुत्थापनेन याद्दशी शृङ्खलासीत् प्रागस्मिन्देशे,

सापि पुनरेव आगमिष्यति इति नास्ति शङ्कावकाशः । अथवा "धर्मनाशात् प्रणश्यति इति सत्यम्" ।

अतः शिक्षाक्षेत्रे, सामाजिकक्षेत्रे राजनैतिकक्षेत्रेऽपि धर्मः प्रवर्त्तनीयः । आधुनिकस्नातकः स्नातकोत्तरशिक्षितश्च धर्मानभिज्ञः भूत्वा भारतीयसंस्कृतेः विलोपं साधयति । इञ्जिनियरगणाः, भेषजप्रविणाः, शासनदण्डाधीशाः, अपितु समाजस्य वह्वः जनाः असाधूपायेन अर्थलाभाय सर्वदा यतन्ते । या शिक्षापद्धतिः अद्य देशेऽस्मिन् दृश्यते, सा तु नूनमयथार्थं इति अनुमीयते । यदि शिक्षापद्धत्यां धर्मशिक्षा तथा धर्माचरणं च परिदृश्येते अपितु तदेव यदि सर्वेषां वाध्यताया अनुसृतं भवति तदा देशस्यास्य सर्वायोजना निश्चयं कार्य्यकारिणी भविष्यतीति नास्ति सन्देहः । अस्मात् हेतोः "धर्मेण हीनाः पशुभिः समानाः" इति उक्तिरियं याथार्थ्येणास्माभिः अनुभुतम् ।

## गुरु दिवसः

दुःखशोकामय प्रदेऽस्मिन् जटिले संसारे भवपाशबद्धानां जनानां कर्त्तव्याकर्त्तव्यनिरूपणे सन्मार्गप्रदर्शने च परमकारुणिकानां सकललोकपूजितानां गुरुगणानां गुरुतरा पृष्ठभूमिका विद्यत इति नास्त्यत्र सन्देहस्यावकाशः । तेषां वन्द्यानां विशेषसम्मान प्रदर्शनार्थं दिवसव्यापी उत्सवः श्रावणपूर्णिमायां प्रतिवर्षं परिपालितः आसीत् ।

सम्प्रति समग्रभारतवर्षे सम्माननीयानां सार् सर्वपल्ली राधाकृष्णमहोदयानां राष्ट्रपतिपद समलंकृतादारभ्य गुरु-दिवसः प्रतिवर्षं 'सेप्टेम्बर' मासस्य पञ्चमेऽहनि परिपाल्यते। खीष्टीय १९६२तमे अब्दे यदा ते महोदया भारतस्य राष्ट्रमुख्यः अभूत् तदा तेषां जयन्ती-पालनार्थं जनाः सम्मुत्सुका जाताः। जीवनस्य सुदीर्घकालं शिक्षादानकर्मणि-व्ययितस्य तस्य तदा तान् जनान् प्रति एवमुत्तरमभवत् यत् तस्य जन्मदिवसः शिक्षकगणानां कल्याणार्थं सम्मानार्थं च गुरुदिवसत्वेन ते परि-पालयेयुः । तत्रभवतां राष्ट्रपतिमहोदयानां निरहं—कारत्वं गुरुगणसमादरत्वं चानेन प्रतीयते। तैः सुष्ठु बुद्धं यत् यै. गुरुगणैः साधारणानां अज्ञानमयानां जनानां महनीय परिवर्त्तनत्वं विधियते तेषां यथासच्चर्नन-मन्तरेण व्यक्ति विशेषस्य समाजस्य च समुन्नतिः न सम्भविष्यति । अतः गुरुप्रणिपातस्य विधिः शास्त्रेषु परिलक्ष्यते यत्

अज्ञान तिमिरान्धस्य ज्ञानाञ्जन शलाकया
चक्षुरुन्मीलितं येन तस्मै श्रीगुरवे नमः ।

गुरुशब्दस्य विश्लेषणं आगमशास्त्रेषु स्पष्टं दरीदृश्यते। तथा चोक्तं तन्त्रार्णवे—

॥ पण्डित चतुर्भुज रथ शर्मा ॥
साहित्याचार्य्यः
तृतीय वार्षिक छात्रः

"गकारः सिद्धिदः प्रोक्तो रेफः पापस्य दाहकः
उकार शम्भुरित्युक्तस्त्रितयात्मा गुरुः स्मृतः ।"

अपिच—

"गु शब्दस्त्वन्धकार स्यात् रु शब्द तन्निरोधकः ।
अन्धकार निरोधित्वात् गुरुरित्यभिधियते ।।"

गुरु' विना मानवस्य धर्म कामार्थमोक्षकर्माणि न सम्भवन्ति । गुरुः ज्ञानदाता, संसार सागरात् त्राणकर्त्ता साक्षात् शिवस्वरूपश्च । अतः ईश्वरः तेन दृष्टः अनुभूतः ज्ञातश्च । तमपहाय परमेश्वर दर्शन मपरोक्षानुभूतिर्वा कदाचिदपि न सम्भवेत् । अतः गुरुप्रणामप्रकरणे उक्तम्—

अखण्ड मण्डलाकार' व्याप्त' येन चराचरम्
तत्पद' दर्शित येन तस्मै श्रीगुरवे नमः ।

गुरु सान्निध्यवशात् मानवस्य सर्वाणि पूर्वापरजन्म संस्थितानि पातकानि नश्यन्ति । प्राचीनकाले चतुर्ष्वाश्रमेषु ब्रह्मचर्य्याश्रमस्य वैशिष्ट्य मुपस्थापयितुमुपनयन संस्कार कर्मणः प्रचलनमासीत् । शिक्षार्दीक्षार्थं स्वगृहं परित्यज्य गुरुगृहगमन' नातस्नापनयनम् । बाल्यादारभ्य पञ्चविंशतिवर्ष यावत् बालकस्य गुरु सान्निध्यावस्थां ब्रह्मचर्य्यावस्थेति कथ्यते । तस्मिनेव काले गुरुणा छात्रः शरीरिक-मानसिकाभिवृध्या सुमनुष्यः क्रियते । गुरुकुलक्लिष्टः शिष्टः पश्चात् स्वेच्छया गृहस्थाश्रममागत्य आजीवन-कौमारव्रतमवलम्व्य वा जीवन-संग्रामे शान्तिमोक्ष-लाभादिषु कर्मसु सफलीभवितुं शक्नुवति । सुमनुष्यगठने पित्रोरपि गुरोर्भूमिका गुरुतरा वर्त्तते । उक्त' च ज्ञानार्णवे—

"जन्महेतु हि पितरौ पूजनीय प्रयत्नतः ।
गुरुर्विशेषतः पूज्यः धर्माधर्मः प्रवर्त्तकः ।।
गुरुपिता गुरुर्माता गुरुर्देवः गुरुर्गतिः ।
शिवेरुष्टे गुरुस्त्राता गुरौ रुष्टे न कश्चनः ।।"

अतः गुरुसेवा प्रयत्नतः विधेया । गुरु सन्तुष्णमात्रेण शिष्येभ्यः सर्वासिद्धिः समुपलभ्यते । गुरुतुल्यो नापरः व्यक्तिः वस्तुच देवो वा विद्यते यस्तु समधिकः पूजनीयः भवितुमर्हति । एतादृशी गर्हिता पूजा यदि केनाऽपि शिष्येनानुष्ठीयते सा निष्फलत्वमेति ।

